

ଗାନ୍ଧୀ ଜୟନ୍ତୀ ପାଳନ ଅବସରରେ ମାନ୍ୟବର ରାଜ୍ୟପାଳ ଶ୍ରୀ ବି: ସତ୍ୟନାରାୟଣ ରେଡ୍ଡୀ
ବିଧାନ ସଭା ପରିସର ମଧ୍ୟରେ ଥିବା ଗାନ୍ଧିଜୀଙ୍କ ପ୍ରତିମୂର୍ତ୍ତିରେ ମାଲ୍ୟାର୍ପଣ କରୁଛନ୍ତି ।
ବିଧାନ ସଭା ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାସ ଉପସ୍ଥିତ ଅଛନ୍ତି ।



ସୂଚନା ଭବନଠାରେ "ଓଡ଼ିଶାରେ ଗାନ୍ଧିଜୀ" ଶୀର୍ଷକ ଏକ ପ୍ରଦର୍ଶନୀକୁ ରାଜ୍ୟପାଳ ଶ୍ରୀ ବି: ସତ୍ୟନାରାୟଣ ରେଡ୍ଡୀ
ଉଦ୍‌ଘାଟନ କରୁଛନ୍ତି ।

# ଉତ୍କଳ ପ୍ରସଙ୍ଗ

୫୦ ଭାଗ ୩ୟ ସଂଖ୍ୟା ଆଶ୍ୱିନ ୧୯୧୪ ଶକାବ୍ଦ ଅକ୍ଟୋବର ୧୯୯୩

## ସମ୍ପାଦକ ମଣ୍ଡଳୀ



ପ୍ରକାଶନ
ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା ସରକାର
ଭୁବନେଶ୍ୱର

ମୁଦ୍ରଣ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦
(ଫଟୋଟାଇପ୍‌ସେଟିଂ ପଦ୍ଧତିରେ ଅକ୍ଷର ସଂଯୋଜିତ)

ବାର୍ଷିକ ଦେୟ : ଟ ୨୦·୦୦
ପ୍ରତି ଖଣ୍ଡ : ଟ ୨·୦୦

ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ସରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ। ଏହା ବ୍ୟତୀତ ଅନେକ ବିଶେଷ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ। ସେଗୁଡ଼ିକ ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠ ବୋଲି ଭାବିବା ଉଚିତ ନୁହେଁ।

"ଉତ୍କଳ ପ୍ରସଙ୍ଗ" ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ହେଁ ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ କ୍ଷେତ୍ରରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ।

# ସୂଚୀ

# ସମ୍ପାଦକୀୟ

## ପବିତ୍ର ଦଶହରା ପର୍ବ

ପବିତ୍ର ଦଶହରା ପର୍ବ ବର୍ଷରେ ଥରେ ଆସିଥାଏ । ଆବାଳ ବୃଦ୍ଧବନିତା ସମସ୍ତଙ୍କ ମନରେ ଏହି ଦଶହରା ପର୍ବଟି ଆନନ୍ଦ ଭରି ଦେଇଥାଏ । ଦଶହରା ପୂଜା ଉତ୍ସବ ଉପଲକ୍ଷେ ନୂଆ ଜାମାପଟା, ଦୋକାନ ବଜାରର ନୂଆ ରଙ୍ଗ, ନୂଆ ସାଜସଜ୍ଜା, ପୂଜା ଉତ୍ସବ, ଭୋଜିଭାତ, ନୃତ୍ୟ ସଙ୍ଗୀତ, ମଉଜ ମଜ୍‌ଲିସ୍ ହସଖୁସି ଇତ୍ୟାଦି ବିଭିନ୍ନ ଆମୋଦ ପ୍ରମୋଦରେ ଆମେ ସମସ୍ତେ ମାତିଥାଉ ।

ପ୍ରତି ବର୍ଷ ଭଳି ଏହି ବର୍ଷ ମଧ୍ୟ ଦଶହରା ପର୍ବ ଆସୁଛି । କିନ୍ତୁ କାହାରି ମନରେ ଆନନ୍ଦ ଉଲ୍ଲାସ ନାହିଁ । ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ଆଜି ସମସ୍ତଙ୍କ ମନରେ ବିଷାଦର ଛାୟା ଘୋଟି ଯାଇଛି । ପ୍ରଳୟଙ୍କରୀ ଭୂମି କମ୍ପରେ ମହାରାଷ୍ଟ୍ର ଓ କର୍ଣ୍ଣାଟକର ଅଗଣିତ ବ୍ୟକ୍ତିଙ୍କ ପ୍ରାଣହାନୀ ଘଟିଛି । ସୌଭାଗ୍ୟ କ୍ରମେ ମୃତ୍ୟୁ ମୁଖରୁ ରକ୍ଷା ପାଇପାଇଥିବା ଲୋକମାନେ ନିଜର ଧନ ସମ୍ପତ୍ତି, ଆତ୍ମୀୟ ସ୍ୱଜନ ପ୍ରଭୃତି ହରାଇବା ସାଙ୍ଗକୁ ଆହତ ଅବସ୍ଥାରେ ଦୁଃଖ ଯନ୍ତ୍ରଣା ଦେଇ ଗତି କରୁଛନ୍ତି । ଏହି ଅଭୂତପୂର୍ବ ଏବଂ ଅକଥନୀୟ ଦୁଃଖଦ ଘଟଣା ପାଇଁ ସମଗ୍ର ଭାରତବାସୀ ଆଜି ଦୁଃଖ ଓ ଶୋକରେ ଜର୍ଜରିତ । ସୁତରାଂ ଏହି ବର୍ଷର ଦଶହରା ପୂଜା ଉତ୍ସବ ଏକ ନିରାଡ଼ମ୍ବର ଉତ୍ସବ ହେଉ । ମା'ଙ୍କ ପାଖରେ ଆମର ଭକ୍ତିପୂର୍ଣ୍ଣ ନିବେଦନ ହିଁ ମା'ଙ୍କ ପାଇଁ ନୈବେଦ୍ୟ ହେଉ । ବାହ୍ୟ ଆଡ଼ମ୍ବର ଓ ସାଜସଜ୍ଜା ପାଇଁ ଉଦ୍ଦିଷ୍ଟ ଅର୍ଥକୁ ସେହି ନିଃସ୍ୱ ଓ ନିଃସହାୟ ଲୋକମାନଙ୍କ କଲ୍ୟାଣରେ ବିନିଯୋଗ କରାଯାଉ । ତାହା ହିଁ ଜଗତ ଜନନୀ ମା' ଦୁର୍ଗାଙ୍କ ପାଇଁ ପ୍ରକୃତ ନୈବେଦ୍ୟ ହେବ ।

ପୁନଶ୍ଚ, ପୁଣ୍ୟ ଅର୍ଜ୍ଜନ ପାଇଁ ଆମେ ପୂଜା ଅର୍ଚ୍ଚନା କରିଥାଉ ଏବଂ ଦାନ, ହୋମ, ଯଜ୍ଞକୁ ନେଇ ହିଁ ପୂଜା । ବିନା ଦାନରେ ପୂଜା ପୂର୍ଣ୍ଣାଙ୍ଗ ନୁହେଁ । ସେଥି ପାଇଁ ଦାନ ହିଁ ମହା ପୁଣ୍ୟ ବୋଲି ଶାସ୍ତ୍ରାନୁମୋଦିତ । ଅତଏବ ଦଶହରା ପୂଜା ଉପବାସକୁ ପୁଣ୍ୟବନ୍ତ କରିବା ପାଇଁ ଦଶହରା ଦିନଟି ଉପବାସ ବ୍ରତ ପାଳନ କରି ସେହି ଅର୍ଥକୁ ଭୂମିକମ୍ପ ଜନିତ ନିଃସହାୟ ବ୍ୟକ୍ତିମାନଙ୍କ ଉଦ୍ଦେଶ୍ୟରେ ଆମ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ କଲ୍ୟାଣ ପାଣ୍ଠିକୁ ପଠାଇବା ନିମନ୍ତେ ନିବେଦନ କରୁଛୁ । ପବିତ୍ର ଦଶହରା ଅବସରରେ, ପବିତ୍ର ଦଶହରା ପୂଜା ଉତ୍ସବ ନିମନ୍ତେ ଉଦ୍ଦିଷ୍ଟ ଅର୍ଥ ଏହି ପବିତ୍ର କାର୍ଯ୍ୟରେ ବିନିଯୋଗ ହେଉ । ଏହା ହିଁ ହେବ ପ୍ରକୃତ ପୁଣ୍ୟ, ପ୍ରକୃତ ପୂଜା, ପ୍ରକୃତ ନୈବେଦ୍ୟ ।

ପ୍ରଦୀପ ପାତ୍ର



ଗଣକବି ବୈଷ୍ଣବ ପାଣି

Ganakabi Baishnaba Pani

ଗ୍ରାମରେ ଉଭୟ କମିଟି ରହି ସମାନ୍ତରାଳ ଭାବରେ କାମ କରୁଥିବାରୁ ପରସ୍ପର ଭିତରେ ବାଦ ବିସମ୍ବାଦ ଦେଖାଦେଉଛି । ଅର୍ଥାତ୍ ବହୁ ଦିନ ଧରି ରହି ଆସୁଥିବା ନ୍ୟାଯ୍ୟ ଦାବି ଯୋଗୁଁ ପରସ୍ପର ଗ୍ରାମ ଭିତରେ କଳହ ଲାଗି ରହିଛି । କମିଟି ଭିତରେ ରହିଥିବା ଏହି କଳହପୂର୍ଣ୍ଣ ରାଜନୀତିକୁ ସୁଧାରିବା ପାଇଁ ଯଦି କୌଣସି ନିର୍ଦ୍ଦିଷ୍ଟ ନୀତିନିୟମ ପ୍ରଣୟନ କରାଯାଏ, ତା'ହେଲେ ଏହି ସମସ୍ୟା ଦୂର ହୋଇପାରିବ । ମୁଁ ଆଶାକରେ ଯୌଥ ଜଙ୍ଗଲ ପରିଚାଳନାରେ ବନ ବିଭାଗ ଏବଂ ଲୋକମାନଙ୍କ ଭିତରେ ଏକା ପ୍ରକାରର କ୍ଷମତା ରହିବା ଦରକାର । ଏଥି ନିମିତ୍ତ ବିଭାଗୀୟ କର୍ମଚାରୀ ସେମାନଙ୍କର ମାଲିକାନା ଜାହିର ନ କରି ନିର୍ଦ୍ଦେଶକ ବା ଦଣ୍ଡଦାୟକ ହିସାବରେ କାମ କରିବା ଉଚିତ ନୁହେଁ, ବରଂ ଲୋକଙ୍କ ସହିତ ମିଶି ଶୃଙ୍ଖଳା ସହିତ କିପରି କାମ କରାଯାଇ ପାରିବ ସେ ଦିଗରେ ଚେଷ୍ଟା କରିବା ଉଚିତ । ନଚେତ୍ ଗ୍ରାମ ଲୋକମାନେ ବିଭାଗୀୟ କର୍ମଚାରୀମାନଙ୍କୁ ସନ୍ଦେହ ଏବଂ ଅବିଶ୍ୱାସ ଦୃଷ୍ଟିରେ ରଖିବେ । ସେମାନେ ମନେ ରଖିବା ଉଚିତ୍, କ'ଣ ପାଇଁ ଏଭଳି ସହଯୋଗ ? କାହାପାଇଁ ଏ ବ୍ୟବସ୍ଥା ? ଅନ୍ୟଭାଷାରେ କହିବାକୁ ଗଲେ ଲୋକଙ୍କର କାର୍ଯ୍ୟସୂଚୀରେ ସରକାର ଗୁରୁତ୍ୱ ଆଣିବା ଉଚିତ୍ । ସରକାରୀ କାର୍ଯ୍ୟକ୍ରମରେ ଲୋକମାନେ ସହଯୋଗ ଓ ଅଂଶଗ୍ରହଣ କରିବା ଉଚିତ୍ । ଆମେ ଯଦି ଏହି ମୌଳିକ ତଥ୍ୟ ଉପରେ ଆଲୋଚନା କରି ଏକ ନିର୍ଦ୍ଦିଷ୍ଟ ପୃଷ୍ଠଭୂମି କରିପାରିବା ତାହାହେଲେ ଆମର ମହତ୍ ଉଦ୍ଦେଶ୍ୟ ସାଧିତ ହୋଇପାରିବ ବୋଲି ଆଶା ।

---

ଜଙ୍ଗଲ ଓ ସମବାୟ ବିଭାଗ ମନ୍ତ୍ରୀ ।



ଭୁବନେଶ୍ୱର ମହର୍ଷି ମହାବିଦ୍ୟାଳୟରେ ନୂତନ ଭାବେ ଖୋଲା ଯାଇଥିବା ଅନର୍ସ ପାଠ୍ୟକ୍ରମକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି ।

# ଜଙ୍ଗଲର ଯୌଥ ପରିଚାଳନା

* ଶ୍ରୀ ଅଦ୍ୱୈତ ପ୍ରସାଦ ସିଂହ

ଆମ ରାଜ୍ୟ ଲୋକମାନଙ୍କ ଦ୍ୱାରା ପାରମ୍ପରିକ ରୀତିରେ ସର୍ବସାଧାରଣ ସମ୍ପତ୍ତିର ପରିଚାଳନା ବ୍ୟବସ୍ଥା ରହିଆସିଛି । ପ୍ରତ୍ୟେକଙ୍କର ସୁବିଧା ପାଇଁ ଗ୍ରାମବାସୀମାନେ ବା ଗ୍ରାମ ସଭା, ପୋଖରୀ, ମନ୍ଦିର, ମଶାଣୀ, ଆମ୍ବତୋଟା ଇତ୍ୟାଦିକୁ ବେଶ୍ ଦକ୍ଷତାର ସହିତ ପରିଚାଳନା କରି ଆସୁଛନ୍ତି । ସେହିପରି ଗ୍ରାମ ଚାରିପାଖରେ ଥିବା ଉଜୁଡ଼ା ଜଙ୍ଗଲ ଗ୍ରାମବାସୀମାନଙ୍କ ଦ୍ୱାରା ସୁରକ୍ଷିତ ହୋଇ ବଢ଼ି ପାରିଛି ଏବଂ ବଡ଼ ଆକାର ଧାରଣ କରିଛି । ଏକଥା ବିଚାର କଲାବେଳେ ସର୍ବସାଧାରଣ ସମ୍ପତ୍ତି ପରିଚାଳନା କରିବାରେ ଲୋକମାନଙ୍କର ସକ୍ରିୟ ସହଯୋଗ କଥା ଚିନ୍ତା କରିବା କିଛି ନୂଆ କଥା ନୁହେଁ । ସେ ଯାହା ହେଉ, ଜଙ୍ଗଲର ଯୌଥ ପରିଚାଳନାରେ ଚଳିଆସିଥିବା ବିଭାଗୀୟ ପରିଚାଳନାର ଏକ ନିକଟ ଅତୀତ ଚିନ୍ତାଧାରା ସମ୍ପୂର୍ଣ୍ଣ ପୃଥକ ।

ଦିନ ଥିଲା, ଆମ ରାଜ୍ୟର ଜଙ୍ଗଲର ଆୟତନ ଥିଲା ଖୁବ୍ ବେଶୀ । ଏହା ରାଜ୍ୟ ଆୟତନର ୩୮.୨ ପ୍ରତିଶତ ଥିଲା । ଜନସଂଖ୍ୟା ବଢ଼ିବା ସହିତ ଅନ୍ୟ କେତେକ ଆନୁଷଙ୍ଗିକ କାରଣକୁ ବିଚାରକୁ ନେଲେ ଜଣାଯାଏ, କୃଷି ଉନ୍ନୟନ କାମ ପାଇଁ ଗଛକଟା, ଅଧିକରୁ ଅଧିକ ଗୋଚାରଣ, ନଦୀବନ୍ଧ ଯୋଜନା ଏବଂ ସର୍ବୋପରି ଜଙ୍ଗଲଜାତ ପଦାର୍ଥ ଉପରେ ଅଧିକରୁ ଅଧିକ ଚାହିଦା ବଢ଼ିବା ପରେ ଜଙ୍ଗଲ ସମ୍ପଦ କ୍ଷୟହୋଇ ଆସିଲା । ଜଙ୍ଗଲ ପ୍ରକୃତିର ଏକ ଆଶୀର୍ବାଦ । ଏଥିରେ ସନ୍ଦେହ ନାହିଁ । କିନ୍ତୁ ଏହାର ଏକ ନିର୍ଦ୍ଦିଷ୍ଟ ସୀମା ଅଛି । ମହାତ୍ମା ଗାନ୍ଧିଙ୍କ ଭାଷାରେ – "ପୃଥିବୀ ପ୍ରତ୍ୟେକଙ୍କର ଚାହିଦା ପାଇଁ ଅନେକ କିଛି ସାଇତି ରଖିଛି, କିନ୍ତୁ କାହାରି ଲୋଭ ପାଇଁ ନୁହେଁ ।" କୌଣସି ନିର୍ଦ୍ଦିଷ୍ଟ ଚାହିଦା ମେଣ୍ଟାଇବାକୁ ହେଲେ ପ୍ରାକୃତିକ ଜଙ୍ଗଲର ଏକ ସୀମିତ ଦକ୍ଷତା ରହିବା ଦରକାର, ଯେପରି ତାହା ନିଜେ ବାହାରୁ ପଡୁଥିବା ଚାପକୁ ବାରମ୍ବାର ଚାରା ଜନ୍ମ ଦେଇ ସମ୍ଭାଳି ନେଇ ପାରେ । ଅନେକ ବର୍ଷ ଧରି ଆମେ ଏହି ମୌଳିକ ସତ୍ୟକୁ ଭୁଲିଯାଇ ଜଙ୍ଗଲ ସମ୍ପଦର ଅପଚୟ କରି ଚାଲିଛେ ଏବଂ ଭବିଷ୍ୟତରେ ଏକ ଭୟାବହ ପରିସ୍ଥିତିର ସମ୍ମୁଖୀନ ହେବାକୁ ଯାଉଛେ ।

ଅରଣ୍ୟ ସମ୍ପଦ ନିର୍ଜୀବ ପଦାର୍ଥ ନୁହେଁ । ବରଂ ତାହା ଏକ ଜୀବନ୍ତ ପରିବର୍ତ୍ତନଶୀଳ ଜୀବଜନ୍ତୁ ଓ ବୃକ୍ଷଲତା ମଧ୍ୟରେ ସମନ୍ୱୟ ରକ୍ଷାକରିବାର ଏକ ପ୍ରକ୍ରିୟା । ପ୍ରାଣୀ ଓ ଉଦ୍ଭିଦ ଜଗତରେ ଥିବା ସହାବସ୍ଥାନର ମଣିଷ ଏକ ଅଂଶ ସ୍ୱରୂପ । ଦୁଃଖର ବିଷୟ ଯେ ମଣିଷ ଏହା ବୁଝି ନ ପାରି ଅରଣ୍ୟ ସମ୍ପଦକୁ ନଷ୍ଟ କରି ଦେଇ ଏକ ଅଣଲେଉଟା ପରିସ୍ଥିତିରେ ପହଞ୍ଚିଛି । ସେ ଯାହା ହେଉ, ବିଳମ୍ବରେ ଏହା ଉପଲବ୍ଧି କରାଗଲା ପରେ ଜଙ୍ଗଲଭିତରେ ଓ ଆସପାଖରେ ରହୁଥିବା ଲୋକମାନଙ୍କର ସହଯୋଗ ଓ ମିଳିତ ଉଦ୍ୟମ ଦ୍ୱାରା ଏଭଳି ଉଜୁଡ଼ା ଜଙ୍ଗଲର ପୁନରୁଦ୍ଧାର କରାଯାଇପାରିବ ।

ଜଙ୍ଗଲ ରକ୍ଷା କାମ କରୁଥିବାରୁ ବିଭାଗୀୟ କର୍ମଚାରୀମାନେ ପୋଲିସ୍ ସହିତ ସମାନ । ଜଙ୍ଗଲରୁ କାଠ ଚୋରି, ବେଆଇନ୍ ଶିକାର, ନିଆଁ ଦାଉରୁ ଜଙ୍ଗଲର ସୁରକ୍ଷା, ପୋଡୁଚାଷ, ଜବର ଦଖଲକୁ ବନ୍ଦ କରିବା ପାଇଁ ଅଧିକ ସଂଖ୍ୟକ କର୍ମଚାରୀ ଅସ୍ତ୍ରଶସ୍ତ୍ର ଏବଂ ମାଜିଷ୍ଟ୍ରେଟ କ୍ଷମତା ପାଇଁ ସବୁବେଳେ ଦାବି କରି ଆସୁଛନ୍ତି । କିନ୍ତୁ ଗାଁ ଗହଳି ଲୋକଙ୍କର ଥିବା ସାମୁହିକ ଉଦ୍ୟମ, ଦାୟିତ୍ୱବୋଧ ଏବଂ ଗଣଚେତନା ଯାହାକି ଜଙ୍ଗଲର ପରିଚାଳନା ପାଇଁ ନିତାନ୍ତ ଆବଶ୍ୟକ, ଏଯାବତ୍ ତା'ଉପରେ ଆମେ ଗୁରୁତ୍ୱ ଦେଇ ନାହୁଁ । ଏହାହିଁ ଯୌଥ ଜଙ୍ଗଲ ପରିଚାଳନା କାର୍ଯ୍ୟକ୍ରମର ମୌଳିକ ନୀତି । ଆମ ରାଜ୍ୟରେ ଜଙ୍ଗଲ ସମ୍ପଦର ସୁରକ୍ଷା ଓ ପରିଚାଳନା ପାଇଁ ଲୋକଙ୍କର ଯେଉଁ ସକ୍ରିୟ ସହଯୋଗ ରହିଛି ତାହା ଅତି ପ୍ରାଚୀନ । ତେଣୁ ରାଜ୍ୟ ସରକାର ୧୯୮୮ ମସିହାରେ ସଂରକ୍ଷିତ ଜଙ୍ଗଲର ସୁରକ୍ଷା ଗ୍ରାମବାସୀମାନଙ୍କ ହାତରେ ଅର୍ପଣ କରିବାକୁ ସ୍ଥିର କରିଛନ୍ତି । ଫଳରେ ଗ୍ରାମ ଚାରି ପାଖରେ ଥିବା ଜଙ୍ଗଲର ସୁରକ୍ଷା ଓ ପରିଚାଳନା ଦାୟିତ୍ୱ ସେହି ଗ୍ରାମର ଜଙ୍ଗଲସୁରକ୍ଷା କମିଟି ହାତରେ ଅର୍ପଣ କରାଯାଇଛି ଏବଂ ଏହି କମିଟି ବିଭାଗୀୟ ବନଖଣ୍ଡ ଅଧୀନରେ କାମ କରୁଛନ୍ତି । ସେହିପରି ୧୯୮୩-୮୪ ମସିହାରୁ ସ୍ୱିଡେନ୍ ସହାୟତାରେ କାର୍ଯ୍ୟକାରୀ ହେଉଥିବା ସାମାଜିକ ବନ ପ୍ରକଳ୍ପର ଗ୍ରାମ୍ୟ ଜଙ୍ଗଲ କମିଟି କାର୍ଯ୍ୟ କରିଆସୁଛନ୍ତି । ଏହି କମିଟି ସାମାଜିକ ବନୀକରଣ ଯୋଜନା କାର୍ଯ୍ୟକାରୀ ହେବାଦିନଠାରୁ ସକ୍ରିୟ ଅଂଶ ଗ୍ରହଣ କରି ଗଛ ଲଗାଇବା, ଅମଳ କରିବା ଏବଂ ଲୋକଙ୍କ ମଧ୍ୟରେ ସୁଷମ ବଣ୍ଟନ କରିବା ଆଦି ଦାୟିତ୍ୱ ବହନକରି ନିରବଚ୍ଛିନ୍ନ ଭାବରେ କାର୍ଯ୍ୟକରି ଆସୁଅଛି ।

ବିଭାଗୀୟ କର୍ମଚାରୀମାନେ ଆମ ରାଜ୍ୟରେ ଏହି ଉଭୟ ପ୍ରକାର କାର୍ଯ୍ୟ କରୁଥିବା କମିଟିର ସଫଳତା ଓ ବିଫଳତା, ଦୋଷ ଓ ଦୁର୍ବଳତା ବିଚାର କରିବା ଉଚିତ । ମୋ ଦୃଷ୍ଟିରେ କେତେକ

ରୁଦ୍ର ଭୈରବ, କାଳ ଭୈରବ, କ୍ରୋଧ ଭୈରବ, ତାମ୍ରଚୂଡ଼ ଭୈରବ ଏବଂ ଚନ୍ଦ୍ରଚୂଡ଼ ଭୈରବ ଇତ୍ୟାଦି । ଦେବୀଙ୍କର ଶକ୍ତି ସମ୍ଭୂତା ଚଉଷଠି ଯୋଗିନୀଗଣ ତାଙ୍କ ମାୟାକୁ ସଞ୍ଚରଣ କରାଇ ମାନବୀୟ ପ୍ରକୃତିରେ ବିଭିନ୍ନତା ଆଣି ଦେଇଥାନ୍ତି ।

ବିଶ୍ୱ ବ୍ରହ୍ମାଣ୍ଡର ମୂଳ କାରଣ ହେଉଛନ୍ତି, ମହାମାୟା ଦେବୀ ଦୁର୍ଗା । ଏହି ଦେବୀ ପ୍ରକୃତିର ନିୟାମକ, ବାହାକ, ବିକାଶ କାରିଣୀ ଓ ସଂହାର କାରିଣୀ ମଧ୍ୟ । ବ୍ରହ୍ମବୈବର୍ତ୍ତ ପୁରାଣରେ ଶ୍ରୀକୃଷ୍ଣ କୃତ ଦୁର୍ଗା ସ୍ତୋତ୍ରରେ ଦେବୀଙ୍କୁ ବନ୍ଦନା କରି କୁହାଯାଇଛି:-

"ସର୍ବବୀଜ ସ୍ୱରୂପାଚ ସର୍ବପୂଜ୍ୟା ନିରାଶ୍ରୟା,
ସର୍ବଜ୍ଞା, ସର୍ବତୋଭଦ୍ରା ସର୍ବ ମଙ୍ଗଳ ମଙ୍ଗଳା
ସର୍ବ ବୁଦ୍ଧି ସ୍ୱରୂପାଚ ସର୍ବଶକ୍ତି ସ୍ୱରୂପିଣୀ,
ସର୍ବଜ୍ଞାନ ପ୍ରଦାଦେବୀ ସର୍ବଜ୍ଞା ସର୍ବ ଭାବିନୀ ।"

ଅର୍ଥାତ୍ "ହେ ଦେବୀ ! ତମେ ସକଳ ସୃଷ୍ଟିର ବୀଜ ସ୍ୱରୂପ ଏବଂ ତୁମେ ହିଁ ସବୁ ।" ଦେବୀଙ୍କର ସାକାର ପୂଜା ପଦ୍ଧତିରେ ଉଲ୍ଲେଖ କରାଯାଇଛି କି ଆର୍ଦ୍ରା ନକ୍ଷତ୍ରରେ ନିଦ୍ରିତା ଦେବୀଙ୍କୁ ଜାଗ୍ରତ କରାଯାଏ । ମୂଳା ନକ୍ଷତ୍ରରେ ମୂର୍ତ୍ତିମତୀ ଦେବୀ ନିକଟେ ଆବାହନ କରାଯାଏ । ପୁନଶ୍ଚ ଉତ୍ତରାଷାଢ଼ା ନକ୍ଷତ୍ରରେ ଦେବୀଙ୍କୁ ପୂଜା କରାଯାଇ ଶ୍ରବଣା ନକ୍ଷତ୍ରରେ ବିସର୍ଜନ କରାଯାଏ ।

ବ୍ରହ୍ମବୈବର୍ତ୍ତ ପୁରାଣରେ ବର୍ଣ୍ଣିତ ହୋଇଛି ଯେ ସପ୍ତମୀ ପୂଜନରେ ବଳି ଅର୍ପଣ କରାଯିବା ଉଚିତ ଏବଂ ଅଷ୍ଟମୀ ପୂଜା ବଳି ରହିତ ହେଲେ ଅତି ଉତ୍ତମ ହୁଏ ଅଷ୍ଟମୀରେ ବଳିଦେବା ଦ୍ୱାରା ମନୁଷ୍ୟ ଉପରେ ବିପତ୍ତି ଆସିଥାଏ । ନବମୀ ବଳି ଦ୍ୱାରା ଦେବୀ ଦୁର୍ଗା ମନୁଷ୍ୟ ଉପରେ ପ୍ରସନ୍ନ ହୋଇଥାନ୍ତି । ଏହି ବଳି କିନ୍ତୁ ହିଂସା ରହିତ ହେବା ବିଧେୟ । ହିଂସା-ବଳି ମନୁଷ୍ୟକୁ ପାପ ଭାଗି କରାଇଥାଏ ।

ହିଂସା ଜନ୍ୟଂ ଚ ପାପଂଚ ଲଭତେ ନାତ୍ର ସଂଶୟଃ
ଯୋ ଯଂ ହନ୍ତି ସତଂ ହନ୍ତି ଚେତି ବେଦୋକ୍ତ ମେବଚ ।

ଅର୍ଥାତ୍-"ହିଂସା ବଳି ଦ୍ୱାରା ପାପ ଭାଗି ହେବାକୁ ହୁଏ । ଯେ ଯାହାକୁ ହତ୍ୟାକରେ ସେ ତାହାରି ଦ୍ୱାରା ହତ ହୁଏ ।"

ଦେବୀଙ୍କର ଅନନ୍ତ ବିଭୂତି ହେଲା ଜଳରେ ସେ ଜଳଦେବୀ, ସ୍ଥଳରେ ଉମାଦେବୀ, ଆକାଶରେ ନିରାକାରା, ପବନରେ ଗନ୍ଧଦେବୀ, ଅଗ୍ନିରେ ଜ୍ୟୋତିର୍ମୟୀ, ବନରେ ବନଦେବୀ, ନଦୀରେ ନଦୀମାତା, (ଯଥା - ଗଙ୍ଗାମାତା), ସାଗରରେ ତରଙ୍ଗିଣୀ, ଶବ୍ଦରେ ଛନ୍ଦମୟୀ, ରୂପରେ କାନ୍ତିମୟୀ, ରସରେ ରାସେଶ୍ୱରୀ, ପର୍ବତରେ ଶୈଳଶିରୀ, ବୃକ୍ଷରେ ଶ୍ୟାମାଶିରୀ, ପତ୍ରରେ ସବୁଜିମା ବନସ୍ପତିରେ ରସଧାରା ଇତ୍ୟାଦି ଇତ୍ୟାଦି । ମାନବର ଜୀବନ ପ୍ରବାହ କାଳରେ ଦେବୀଙ୍କର ସ୍ୱରୂପ ହେଉଛି ପ୍ରେମଧାରା, ବୈଷ୍ଣବଗଣ ରାଧାତତ୍ତ୍ୱ ବୋଲି ଯାହାର ନାମ କରଣ କରିଛନ୍ତି । କୃଷ୍ଣଙ୍କର ନାରୀଶକ୍ତି ହେଉଛନ୍ତି ରାଧା, ରାଧାଙ୍କର ପୁରୁଷ ଶକ୍ତି ହେଉଛନ୍ତି କୃଷ୍ଣ, ମନ୍ମଥ-କୃଷ୍ଣ; ମନ୍ମଥୀ-ରାଧା । କୃଷ୍ଣ ହେଲେ ଆକର୍ଷଣ ଶକ୍ତି, ରାଧା ହେଲେ ଏହି ଶକ୍ତିର ସଂଯୋଗ କାରିଣୀ । କୃଷ୍ଣ ହେଉଛନ୍ତି ବଂଶୀ, ରାଧା ହେଉଛନ୍ତି ତହିଁର ସ୍ୱର । କୃଷ୍ଣ ହେଉଛନ୍ତି ଯମୁନା, ରାଧା ହେଉଛନ୍ତି ତହିଁର ଜଳ ତରଙ୍ଗ କୃଷ୍ଣ ହେଉଛନ୍ତି ଚନ୍ଦ୍ର, ରାଧା ହେଉଛନ୍ତି ତହିଁର ବିକଚ କୁସୁମ । କୃଷ୍ଣ ହେଉଛନ୍ତି ମୟୂର, ରାଧା ହେଉଛନ୍ତି ତହିଁର ନୃତ୍ୟଭଙ୍ଗୀ ଏ ବିଶ୍ୱ ବ୍ରହ୍ମାଣ୍ଡ ରାଧାକୃଷ୍ଣ ଲୀଳାରେ ଲୀଳାୟିତ ରସ ରାସେଶ୍ୱରଙ୍କର ରାସଲୀଳାର କୁଞ୍ଜଭୂମି ଏ ପୃଥିବୀ, ତଥା ଏ ବ୍ରହ୍ମାଣ୍ଡରେ ରାସେଶ୍ୱରୀଙ୍କର ମାୟା ପରଦାର ଅକଳନୀୟ ଚିତ୍ରର ପଟାନ୍ତର ନାହିଁ ।

ରଙ୍ଗମଞ୍ଚରେ ଅଭିନେତାମାନେ ଯେପରି ବହୁ ବେଶ ପୋଷାକରେ ସଜ୍ଜିତ ହୋଇ ଅଭିନୟ ପ୍ରଦର୍ଶନ କରିଥାନ୍ତି, ସେହିପରି ଯୋଗମାୟାଙ୍କର ସଂସାରରୂପୀ, ଏହି ଲୀଳାର ରଙ୍ଗମଞ୍ଚରେ ଆମେ ବହୁ ଧର୍ମୀ, ବହୁଭାଷାଭାଷୀ, ବହୁ ଭାବଭଙ୍ଗୀ, ବହୁ ବେଶଭୂଷାର ଅଭିନେତାମାନେ ଅଭିନୟ କର୍ମକରି ଶେଷରେ ଏ ରଙ୍ଗମଞ୍ଚରୁ ବିଦାୟ ନେଇଯିବା । ନୂଆ ଅଭିନେତାମାନେ ପୂର୍ବପରି ପୁନଶ୍ଚ ଏ ରଙ୍ଗମଞ୍ଚ ମଣ୍ଡନ କରିବେ । ବିଭିନ୍ନତା ଭିତରେ ଏ ରଙ୍ଗମଞ୍ଚ ହେଉଛି, ଏକତାର ପୁଣ୍ୟପୀଠ । ଏହାର ଜନନୀ ହେଉଛନ୍ତି ଯୋଗମାୟା ବା ମହାମାୟୀ ମା ଦୁର୍ଗାଦେବୀ ।

ଦୁର୍ଗା ପୂଜା ହେଉଛି ଏକତାର ପୂଜା, ସଂହତିର ପୂଜା, ମାନବୀୟ ସଂପ୍ରୀତିର ପୂଜା, ଏ ମଣ୍ଡପ ହେଉଛି ସାର୍ବଜନୀନ । ଏ ପୂଜାରେ ମହାମିଳନ ସଙ୍ଗଠିତ ହୋଇଥାଏ । ଏହାର ମନ୍ତ୍ର ହେଲା:-

ଅଦ୍ୟମେ ସଫଳ ଜନ୍ମ ଜୀବିତଂ ଚ ସୁଜୀବିତମ୍
ଯଦ୍ ଦୃଷ୍ଟ୍ୱା ମୁଖଚନ୍ଦ୍ରଂ ତେ ସୁସ୍ନିଗ୍ଧଂ ଲୋଚନଂ ମମଃ
ପଞ୍ଚ ପ୍ରାଣାଶ୍ଚ ସ୍ନିଗ୍ଧାଶ୍ଚ ପରମାତ୍ମା ଚ ସୁପ୍ରିୟଃ
ଉଭୟୋର୍ହର୍ଷ ବୀଜଂ ଚ ଦୁର୍ଲଭଂ ବନ୍ଧୁ ଦର୍ଶନମ୍

ସମ୍ପାଦକ, ଦୁର୍ମୁଖ,
ରାଜାବଗିଚ୍ଚା, କଟକ-୯ ।

# ପୂଜା ମଣ୍ଡପ ହିଁ ମିଳନର ମଞ୍ଚ

* ପଣ୍ଡିତ ଅଚ୍ୟୁତାନନ୍ଦ କର

ଏ ବିଶ୍ୱ ବ୍ରହ୍ମାଣ୍ଡର କ୍ରିୟାକଳାପ ଏପରି ଅଲୌକିକ ଯେ ତହିଁର ରହସ୍ୟ ଭେଦ କରିବା ପାଇଁ ଆଜିର ବିଜ୍ଞାନ ଯେତିକି ତତ୍ପର, ଅତୀତରେ ମୁନି ଋଷିମାନେ ନିଜର ତପସ୍ୟା ତଥା ସାଧନ ମାର୍ଗରେ ସେ ରହସ୍ୟ ସମୂହକୁ ଭେଦ କରିବା ପାଇଁ ତହୁଁ ବଳି ପ୍ରୟାସ କରି ଯାଇଛନ୍ତି। ସେମାନେ ନିଜର ଆତ୍ମିକ ପ୍ରୟାସ ବଳରେ ଯେଉଁ ସତ୍ୟ ନିକଟରେ ପହଞ୍ଚି ପାରିଛନ୍ତି, ତାହା ହେଲା ବ୍ରହ୍ମ ବା ପରମାତ୍ମା ହିଁ ଏ ସମସ୍ତ କ୍ରିୟା କଳାପର ଆଦିତତ୍ତ୍ୱ ଏବଂ ନିଶ୍ଚଳ ବ୍ରହ୍ମକୁ ଗତିଶୀଳ କରାଇବାର ଯେଉଁ ବିକାଶତମ ଅଭିପ୍ସା ତାହାର ନାମ ହେଲା ଯୋଗମାୟା। ବହିଃ ଜଗତର ଜାଗତିକ ବିକାଶ ନିମନ୍ତେ ଆଦିତତ୍ତ୍ୱ ଦୁଇଭାଗରେ ବିଭକ୍ତ ହୋଇ ପ୍ରକୃତି ଓ ପୁରୁଷ ନାମକୁ ଗ୍ରହଣ କରିଛନ୍ତି। ପୁରୁଷର ପୁରୁଷୀଶକ୍ତି ହେଉଛନ୍ତି ପ୍ରକୃତି; ଉଦାହରଣତଃ ଅଗ୍ନିଙ୍କର ତେଜ ହେଲା ଓ ଦହନ ଶକ୍ତି ହେଲା ପ୍ରକୃତି। ଅଗ୍ନିଙ୍କଠାରେ ଏହି ଦହନଶକ୍ତି ରହିଛି, ତାହା ସ୍ଥୂଳ ନୟନରେ ଦୃଷ୍ଟି ଗୋଚର ହୋଇପାରେ ନାହିଁ। ଜଣେ ଗାୟକ ନିରବ ହୋଇ ବସିଥିବା ଅବସ୍ଥାରେ, ତାଂଠାରେ ଥିବା ଗାୟକ କଳା ଜଣା ପଡ଼େ ନାହିଁ; ଜଣେ ଚିତ୍ରକରଙ୍କୁ ଦେଖିଲେ ତାହାଠାରେ ଚିତ୍ରକଳା ଥିବାର ଜଣା ପଡ଼େ ନାହିଁ। କିନ୍ତୁ ଏ କଳାଗୁଡ଼ିକ ସେମାନଙ୍କଠାରେ ଅତି ସୂକ୍ଷ୍ମ ରୂପରେ ଲୁଚି ରହିଥାଏ। ଏ ସୂକ୍ଷ୍ମ ସ୍ୱରୂପ ବା ଯାହାର ଅନ୍ୟନାମ ଅରୂପ ତାକୁହିଁ ସୂକ୍ଷ୍ମ ଦୃଷ୍ଟି ଦ୍ୱାରା ଅମୂର୍ତ୍ତିକୁ ମୂର୍ତ୍ତିଭାବେ ଯେଉଁମାନେ ଦେଖିପାରନ୍ତି ସେମାନଙ୍କୁ ଭାରତୀୟ ଦାର୍ଶନିକଗଣ ପରା ବିଜ୍ଞାନୀ ବୋଲି କହିଥାନ୍ତି।

ତେଣୁ ପୁରୁଷର ପୁରୁଷୀ ଶକ୍ତିକୁ ନାରୀମାନଙ୍କର ବିଭିନ୍ନ ଅବସ୍ଥା ମଧ୍ୟରେ ଚିତ୍ରିତ କରି ଭାରତୀୟ ପରମ୍ପରାରେ ଦେବୀ ପୂଜାର ମହତ୍ତ୍ୱ ବିଭିନ୍ନ ଋଷି ମୁନିମାନେ ପ୍ରତିପାଦନ କରି ଯାଇଛନ୍ତି। ଭାରତୀୟ ତନ୍ତ୍ର ଶାସ୍ତ୍ରରେ ବିଶଦ୍ ବିବରଣୀମାନ ଉଲ୍ଲେଖ କରାଯାଇଛି। ମୁଖ୍ୟତଃ ଚତୁଃଷଷ୍ଠି ତନ୍ତ୍ରଶାସ୍ତ୍ରର ଏଯାବତ୍ ପ୍ରମାଣ ମିଳିଥାଏ। ଯଥା:– ସିଦ୍ଧୀଶ୍ୱର, ମହାତନ୍ତ୍ର, କଳାର୍ଣ୍ଣବତନ୍ତ୍ର, ଜ୍ଞାନାର୍ଣ୍ଣବତନ୍ତ୍ର, ନୀଳତନ୍ତ୍ର, ଫେତ୍କାରୀ, ଦେବ୍ୟାଗମ, ଉତ୍ତରତନ୍ତ୍ର, ଶ୍ରୀକ୍ରମତନ୍ତ୍ର, ସିଦ୍ଧିଯାମଳ, ମତ୍ସ୍ୟସୂକ୍ତ, ସିଦ୍ଧସାର, ସିଦ୍ଧିସାରସ୍ୱତ, ବାରାହୀ, ଯୋଗିନୀ, ଗଣେଶବିମର୍ଷିଣୀ, ନିତ୍ୟତନ୍ତ୍ର, ଶିବାଗମ, ଚାମୁଣ୍ଡା, ମୁଣ୍ଡମାଳା, ହଂସମାହେଶ୍ୱର, ନିରୁତ୍ତର, କୁଳପ୍ରକାଶ, କଳ୍ପତନ୍ତ୍ର, ଗାନ୍ଧର୍ବତନ୍ତ୍ର, କ୍ରିୟାସାର, ନିବନ୍ଧ, ସ୍ୱତନ୍ତ୍ର, ସମ୍ମୋହନ, ତନ୍ତ୍ରରାଜ, ଲଳିତାତନ୍ତ୍ର, ରାଧାତନ୍ତ୍ର, ମାଳିନୀ, ରୁଦ୍ରଯାମଳ, ବୃହତନ୍ତ୍ର, ଶ୍ରୀକ୍ରମ, ଗବାକ୍ଷ, ସୁକୁମୁଦିନୀ, ବିଶୁଦ୍ଧେଶ୍ୱର, ମାଳିନୀବିଜୟ, ସମୀୟାଗ୍ରର, ଭୈରବୀ, ଯୋଗିନୀହୃଦୟ, ଭୈରବ, ସନତ୍ କୁମାର, ଯୋନିତନ୍ତ୍ର, ନବରତ୍ନେଶ୍ୱର, କୁଳଚୂଡ଼ାମଣି, ଭାବଚୂଡ଼ାମଣି, ତନ୍ତ୍ରଦେବ ପ୍ରକାଶ, କାମାକ୍ଷା, କାମଧେନୁ, କୁମାରୀ, ଭୂତଡ଼ାମର, ନଳିନୀ ବିଜୟ, ଯାମଳ, ବ୍ରହ୍ମଯାମଳ, ବିଶ୍ୱସାର, ମହାତନ୍ତ୍ର, ମହାକୁଳାକୁଳାଷ୍ଟକ, କୁଳୋଡ଼ୀଶ, କୁବ୍ଜାତନ୍ତ୍ର, ଯନ୍ତ୍ରଚିନ୍ତାମଣିତନ୍ତ୍ର ଇତ୍ୟାଦି। ଏହାପରେ ତନ୍ତ୍ରର ଅନ୍ୟ ଏକ ବିଭାଗ ରହିଛି। ତାହା ହେଲା ଶାବରତନ୍ତ୍ର।

ନାରୀମାନଙ୍କର ବିଭିନ୍ନ ଅବସ୍ଥାକୁ ନେଇ ରୁଦ୍ରଯାମଳ ତନ୍ତ୍ରରେ ବର୍ଣ୍ଣନା କରାଯାଇଛି ଯେ, ଏକ ବର୍ଷୀୟା ବାଳିକା ସନ୍ଧ୍ୟା, ଦ୍ୱି ବର୍ଷୀୟା ସରସ୍ୱତୀ, ତ୍ରୀ ବର୍ଷୀୟା ତ୍ରିଧାମୂର୍ତ୍ତି, ଚତୁଃ ବର୍ଷୀୟା କାଳିକା, ପଞ୍ଚ ବର୍ଷୀୟା ସୁଭଗା, ଷଡ଼ ବର୍ଷୀୟା ଉମା, ସପ୍ତ ବର୍ଷୀୟା ମାଳିନୀ, ଅଷ୍ଟ ବର୍ଷୀୟା କୁବ୍ଜିକା, ନବ ବର୍ଷୀୟା ସନ୍ଦର୍ଭା, ଦଶ ବର୍ଷୀୟା ଅପରାଜିତା, ଏକାଦଶ ବର୍ଷୀୟା ରୁଦ୍ରାଣୀ, ଦ୍ୱାଦଶ ବର୍ଷୀୟା ଭୈରବୀ, ତ୍ରୟୋଦଶ ବର୍ଷୀୟା ମହାଲକ୍ଷ୍ମୀ, ଚତୁର୍ଦ୍ଦଶ ବର୍ଷୀୟା ପୀଠନାୟିକା, ପଞ୍ଚଦଶ ବର୍ଷୀୟା କ୍ଷେତ୍ରଜ୍ଞା, ଷୋଡ଼ଶ ବର୍ଷୀୟା ବାଳିକା ଅମ୍ବିକା ଅଟନ୍ତି। ଏହି ଷୋଡ଼ଶ ପ୍ରକାର କୁମାରୀ ପୂଜା ବିଧାନର ସମସ୍ତ ବ୍ୟବସ୍ଥା ରୁଦ୍ରଯାମଳ ତନ୍ତ୍ରରେ ଉଲ୍ଲେଖ ରହୁଛି। ଜାତିଭେଦ, ବର୍ଣ୍ଣଭେଦ ଉର୍ଦ୍ଧ୍ୱରେ ଏ ପୂଜା ହେଉଛି, ସମତାଭିତ୍ତିକ ମାତୃପୂଜା ପ୍ରକ୍ରିୟା।

ବିଶ୍ୱ ବ୍ରହ୍ମାଣ୍ଡର ଅନନ୍ତକୋଟି ବିକାଶ ତଥା ମାନବୀୟ ନେଇ ଓ ନାରୀ ଭେଦରେ ଅବସ୍ଥାର ବିଭିନ୍ନ ଚିତ୍ର ଚରିତ୍ରରେ ସାମଗ୍ରିକ ସ୍ୱରୂପ ହେଉଛନ୍ତି ମହାମାୟା ବା ଦେବୀ ଦୁର୍ଗା। ତ୍ରିଶକ୍ତି ହେଉଛନ୍ତି, ଏହାଙ୍କର ବିକାଶ ପ୍ରକ୍ରିୟାର ବାହାକ। ସେ ଶକ୍ତି ହେଲା ମହାକାଳୀ, ମହାଲକ୍ଷ୍ମୀ, ମହାସରସ୍ୱତୀ। ପୁନଶ୍ଚ ଦେବୀ ଦୁର୍ଗାଙ୍କର ବହୁ ରୂପତା ମଧ୍ୟ ରହିଛନ୍ତି। ଉଦାହରଣତଃ – ବ୍ରାହ୍ମଣୀ, ବୈଷ୍ଣବୀ, ରୌଦ୍ରୀ, ମାହେଶ୍ୱରୀ, ନାରସିଂହୀ, ବାରାହୀ, ଇନ୍ଦ୍ରାଣୀ, କାର୍ତ୍ତିକୀ ବା କୌମାରୀ ଇତ୍ୟାଦି। ଦେବୀଙ୍କର ଅଷ୍ଟ ସହଚରୀ ହେଲେ ଉଗ୍ରଚଣ୍ଡା, ପ୍ରଚଣ୍ଡା, ଚଣ୍ଡୋଗ୍ରା, ଚଣ୍ଡ ନାୟିକା, ଅତି ଚଣ୍ଡା, ଚାମୁଣ୍ଡା, ଚଣ୍ଡା, ଚଣ୍ଡାବତୀ ଇତ୍ୟାଦି। ଏହି ସହଚରୀମାନଙ୍କର ପୁରୁଷଶକ୍ତି ହେଉଛନ୍ତି ଅଷ୍ଟଭୈରବ। ଯଥାକ୍ରମେ:–ମହାଭୈରବ, ସଂହାର ଭୈରବ, ଅସିତାଙ୍ଗ ଭୈରବ,

ଭୈରବ, ତାମ୍ରଚୂଡ଼ ଓ ଚନ୍ଦ୍ରଚୂଡ଼ ନାମକ ଅଷ୍ଟ ଭୈରବ ଜନ୍ମ ନେଇ ଅସୁରଙ୍କୁ ନିପାତ କଲେ । ଏହି ଅଷ୍ଟ ଭୈରବଙ୍କ ଶକ୍ତି ବିଶେଷଙ୍କୁ ଅଷ୍ଟ ଭୈରବୀ ରୂପେ ପୂଜା କରାଗଲା । କିନ୍ତୁ ଅଗ୍ନିପୁରାଣ– ଭୈରବଙ୍କ ଜନ୍ମ ସମ୍ପନ୍ଧରେ ଅନ୍ୟମତ ପ୍ରଦାନ କରେ । ଏକଦା ଶିବଙ୍କଠାରୁ ଏକ କୋପାନଳମୟ ଭୈରବ ମୂର୍ତ୍ତି ଜନ୍ମଲାଭ କରି ଜନ୍ମଦାତା ଶିବଙ୍କୁ ଅମାନ୍ୟ କରିବାକୁ ଲାଗିଲା ଓ ପରେ ସ୍ୱର୍ଗପୁର ଗମନ କରି ସମସ୍ତ ଦେବତାମାନଙ୍କୁ ଦମନ କରି ଅହଂଗର୍ବ ଆଧିପତ୍ୟ ବିସ୍ତାର କରିବାକୁ ଲାଗିଲା । ଶିବ ଏହି ଭୈରବଙ୍କ କାର୍ଯ୍ୟକଳାପ ଓ ମଉଗର୍ବରେ ଅସନ୍ତୁଷ୍ଟ ହୋଇ ଦମନକ/ଡାଡିରୀ ବୃକ୍ଷ ହୋଇଯିବା ପାଇଁ ଅଭିଶାପ ଦେଲେ, ମାତ୍ର ଭୈରବ ଶାପଗ୍ରସ୍ତ ହୋଇ କ୍ଷମାଭିକ୍ଷୁ ହେଲାରୁ ବୃକ୍ଷ ହୋଇ ରହିଲେ ମଧ୍ଯ ଅନ୍ୟ ଦେବତାଙ୍କ ଭଳି ପୂଜାପାଇବ ବୋଲି ବରପ୍ରାପ୍ତ ହେଲେ । ସେ ଦିନରୁ ଏହି ଭୈରବ ଦମନକ ବୃକ୍ଷଭାବେ ଉପାସିତ ହୋଇ ଆସୁଥିବା ଜଣାଯାଏ ।

ଲିଙ୍ଗ ପୁରାଣ, ଶିବ ପୁରାଣ ଓ ଶତରୁ ସଂହିତାରେ ଭୈରବୀଙ୍କ ଆବିର୍ଭାବ ଭିନ୍ନ ଭାବରେ ଲିଖିତ । ଥରେ ବ୍ରହ୍ମା ଓ ବିଷ୍ଣୁ ସ୍ୱ ସ୍ୱ ଆସ ବଡ଼ିମାରେ ଗର୍ବିତ ହୋଇ ବିଶ୍ୱରୂପ ପ୍ରଦର୍ଶନ କଲାବେଳେ ନିସ୍ୱଯୋଗୀ ବେଶଧାରୀ ଶିବଙ୍କୁ ଦେଖି ବ୍ରହ୍ମା ତାଚ୍ଛଲ୍ୟ କରିଥିଲେ । ଅପମାନକ୍ଲିଷ୍ଟ ଶିବଙ୍କ କ୍ରୋଧାଗ୍ନିରୁ ଏକ୍ ଭୈରବ ଉତ୍ପନ୍ନ ହୋଇ ଶିବଙ୍କ ନିର୍ଦ୍ଦେଶରେ ବ୍ରହ୍ମାଙ୍କ ପଞ୍ଚମ ମୁଖକୁ ଏକ ଚପୁଡ଼ା ମାରି ସ୍କନ୍ଧଚ୍ୟୁତ କରନ୍ତେ ଏକ ଭୈରବ ବ୍ରହ୍ମହତ୍ୟା ଦୋଷରେ ଭାଗୀ ହେଲେ । ବ୍ରହ୍ମାଙ୍କର ସ୍କନ୍ଧଚ୍ୟୁତ ପଞ୍ଚମ ମୁଖଟି ଭୈରବଙ୍କ ହସ୍ତପଦ୍ମରେ ଲାଖି ରହିଗଲା । ଶିବ ଏ ଦୃଶ୍ୟ ଦେଖି ଓ ଭୈରବଙ୍କ ବ୍ରହ୍ମହତ୍ୟା ଦୋଷରୁ ମୁକ୍ତି ପାଇବା ପାଇଁ– ଭିକ୍ଷା ଆହରଣ ପୂର୍ବକ ବିଭିନ୍ନ ପୁଣ୍ୟ ତୀର୍ଥାଟନ କରିବା ପାଇଁ ନିର୍ଦ୍ଦେଶ ଦେଲେ ଓ ଏହି ଭୈରବଙ୍କ ଅନୁଗାମୀ କରାଇବା ପାଇଁ ଏକ ଶକ୍ତ ଭୈରବୀଙ୍କୁ ଉତ୍ପନ୍ନ କରିଥିଲେ । ବ୍ରହ୍ମହତ୍ୟା ଦୋଷ ନିପୀଡ଼ିତ ଭୈରବ– ବ୍ରହ୍ମାଙ୍କର କପାଳକୁ ହସ୍ତରେ ଧରି ନାନାଦି ତୀର୍ଥାଟନ କଲେ ମଧ୍ଯ କପାଳ ହସ୍ତଚ୍ୟୁତ ହେଲା ନାହିଁ । ଶେଷରେ ବାରାଣସୀରେ ଭୈରବୀ ମା' ଅର୍ଣ୍ଣପୂର୍ଣ୍ଣାଙ୍କଠାରୁ ଅନ୍ନ ଗ୍ରହଣବେଳେ ଭୈରବଙ୍କ ହସ୍ତରେ ଲାଖି ରହିଥିବା ବ୍ରହ୍ମାଙ୍କ କପାଳ (ମସ୍ତକ) ତଳେ ନିପତିତ ହେଲା ଏବଂ ଭୈରବ ଶାପ ମୁକ୍ତ ହେବା ସଙ୍ଗେ ସଙ୍ଗେ ସେ ଦିନରୁ ବାରାଣସୀ କ୍ଷେତ୍ର 'କପାଳ ବିମୋଚନ ତୀର୍ଥ' ତଥା ଭୈରବୀ ପୀଠ ରୂପେ ଜନାଦୃତ ହେଲା ଓ ଦେବୀ ଅର୍ଣ୍ଣପୂର୍ଣ୍ଣା ଭୈରବୀ ରୂପରେ ଖ୍ୟାତ ହେଲେ ।

ଦେବୀ ପୁରାଣମାନଙ୍କରେ ବର୍ଣ୍ଣିତ ଯେ, ଦେବୀ ପାର୍ବତୀ ଦକ୍ଷ ଯଜ୍ଞରେ ପଡ଼ି ଦେହତ୍ୟାଗ କରନ୍ତେ ଦେବ ଦେବ ମହାଦେବ ପ୍ରଚଣ୍ଡ କ୍ରୋଧରେ ଜର୍ଜରିତ ଅତି ଭୟଙ୍କର ଭୈରବ ମୂର୍ତ୍ତି ଧାରଣ ପୂର୍ବକ ଶ୍ୱଶୁର ଦକ୍ଷଙ୍କୁ ବଧକରି ପତ୍ନୀ ପାର୍ବତୀଙ୍କ ଅର୍ଦ୍ଧ ଦଗ୍ଧ ଶରୀରକୁ କୋଳରେ ଧାରଣ କରି ପ୍ରଳୟକାଳୀନ ତାଣ୍ଡବ ନୃତ୍ୟ ଆରମ୍ଭ କଲେ । ଶିବଙ୍କ ଏତାଦୃଶ୍ୟ ନୃତ୍ୟରେ ଶଙ୍କିତ ଦେବଗଣ ନାରାୟଣଙ୍କୁ ଶିବକୋପ ଶାନ୍ତ ଉଦ୍ଦେଶ୍ୟରେ ପ୍ରାର୍ଥନା କଲେ । ନାରାୟଣ ଅଦୃଶ୍ୟରେ ସ୍ୱଚକ୍ର ସୁଦର୍ଶନରେ ଦେବୀ ପାର୍ବତୀଙ୍କ ଅଙ୍ଗକୁ କାଟି ବିଚ୍ଛିନ୍ନ କରି ପକାଇଲେ । ଶିବ ପାର୍ବତୀଙ୍କ ଶରୀରକୁ ନ ପାଇ ଦେବଗଣଙ୍କ ପ୍ରାର୍ଥନାରେ ଶାନ୍ତ ରୂପ ଧାରଣ କରିଥିଲେ । ବିଷ୍ଣୁ ଚକ୍ର ଛେଦିତ ଦେବୀ ପାର୍ବତୀଙ୍କ ଅଙ୍ଗପ୍ରତ୍ୟଙ୍ଗ ନାନାସ୍ଥାନରେ ପଡ଼ି ଏକାବନଟି ଶକ୍ତିପୀଠ ଓ ଛବିଶଟି ଉପପୀଠ ସୃଷ୍ଟି ହେଲା ।

ଏଥିରୁ ଦେବୀଙ୍କ ଜଠଭାଗ ହର ଦ୍ୱାରରେ ପଡ଼ି ଭୈରବୀପୀଠ ସୃଷ୍ଟି ହେଲା । ଅନ୍ୟମତରେ ଦେଖାଯାଏ ଯେ : ଦେବୀଙ୍କ ପାଦ ଖଣ୍ଡରୁ ସୃଷ୍ଟି ହୋଇଥିବା ଜଗନ୍ନାଥଧାମ ବିମଳା ପୀଠ ଓ ଗଞ୍ଜାମ ମନ୍ତ୍ରିଡୀସ୍ଥ (ଏକପାଦ ପଡ଼ି) ଭୈରବୀ ପୀଠ ବୋଲି ବର୍ଣ୍ଣନା କରାଯାଇଛି । ହରଦ୍ୱାରରେ ବଙ୍କ ଭୈରବ ଓ ପୁରୀ ଓ ଭୈରବୀ ପୀଠରେ ଜଗନ୍ନାଥ ପୀଠ ରକ୍ଷକ ରୂପେ ଅଧିଷ୍ଠିତ ।

ଅଗ୍ନିପୁରାଣରେ ମହାଭୈରବ ଓ ଭୈରବୀଙ୍କ ରୂପ ନିମ୍ନପ୍ରକାରେ ବର୍ଣ୍ଣିତ । ଦେବ ଭୈରବ ପଞ୍ଚମୁଖ, ମସ୍ତକରେ ବଙ୍କିମ ଚନ୍ଦ୍ର ସୁଶୋଭିତ ଜଟାଭାର, ବାହୁରେ କଂକଣ ରୂପୀ ସର୍ପାଳଙ୍କାର ବିଭୂଷଣ, ହସ୍ତରେ ଖଡ୍‌ଗ, ଧନୁ, ତୀର, ତ୍ରିଶୂଳ, ପିନାକ, କାଳପାଶ ଓ ଡମ୍ବରୁ ଶୋଭିତ, ଶ୍ୱାନ ବାହାନ ପୃଷ୍ଠରେ ରୌଦ୍ରରୂପୀ, ଉଗ୍ରତେଜା ଭୈରବ, ବ୍ୟାଘ୍ର ଓ ହସ୍ତୀ ଚର୍ମାବୃତା, ଉଗ୍ର ବିଲୋଚନ ଧୂସରକାନ୍ତ ତେଜଦ୍ୟୋତକ ଓ ପ୍ରଳୟଙ୍କର ଓଡ଼ିଶା ତଥା ପୂର୍ଣ୍ଣଭୂମି ଭାରତର ଗାଁ ଗହଳିରେ ଭୈରବ ଭୈରବୀ ଉପାସନା ଅତି ପ୍ରାଚୀନ ସଂସ୍କୃତି ଓ ପରମ୍ପରା ବିଜଡ଼ିତ । ତନ୍ତ୍ରଯୁଗ କାହିଁକି ବୌଦ୍ଧଯୁଗରେ ମଧ୍ଯ ପ୍ରଚଣ୍ଡ ନୃତ୍ୟରତ ଭୈରବଙ୍କ ମୂର୍ତ୍ତି ଦେଖିବାକୁ ମିଳେ ଓ ଉପାସନା ଚଳି ଆସୁଥିବା ପ୍ରମାଣ ବହୁଳ । ଏତଦ୍ବ୍ୟତୀତ ଶ୍ରାବଣ ପୂର୍ଣ୍ଣିମା ପରେ କୃଷ୍ଣ ପଞ୍ଚମୀ (ରକ୍ଷା ପଞ୍ଚମୀ) ଦିନ ଭୈରବଙ୍କ ପୂଜା କରାଯାଇଥାଏ । ଏ ଦିନ ପ୍ରତ୍ୟୁଷରୁ ଶୁଚିବନ୍ତ ହୋଇ ମୁଖ୍ୟ ଦରଜାରେ ଏକ ପଦ ବିଶିଷ୍ଟ ଭୈରବଙ୍କ ମୂର୍ତ୍ତି ଓ ଭୈରବୀ ଚକ୍ର ଆଙ୍କି ଦୁବ, ଅକ୍ଷତ, ହଳଦୀ, ଚନ୍ଦନ, ସିନ୍ଦୁର ଓ ଫୁଲରେ ରଞ୍ଜିତ କରାଇ ଭୈରବାଦିଙ୍କ ପୂଜାର ଉପାସନା କରାଯାଏ । ଚନ୍ଦନ ଓ ସିନ୍ଦୁରରେ "ଘଣ୍ଟାକର୍ଣ୍ଣ ମହାବ୍ୟାଧି ନିବାରକ" ବୋଲି ମନ୍ତ୍ର ଲେଖାଯାଏ । ଲୋକଙ୍କ ମନରେ ପ୍ରଗାଢ଼ ବିଶ୍ୱାସ ଯେ, ଦେବ ଭୈରବ ଓ ଦେବୀ ଭୈରବୀ ହିଁ ସର୍ବଲୋକର ରକ୍ଷାକର୍ତ୍ତା ଓ ରକ୍ଷାକର୍ତ୍ତ୍ରୀ ।

ପରିପ୍ରେକ୍ଷୀରେ ଦକ୍ଷିଣ ଓଡ଼ିଶାର ବ୍ରହ୍ମପୁର ନିକଟବର୍ତ୍ତୀ ପ୍ରସିଦ୍ଧ ଦେବୀ ଏକପାଦ ଭୈରବୀ ପୀଠର, ପୂଜାକୀର୍ତ୍ତନ ଲକ୍ଷଣୀୟ । ଭୂମି ମଧ୍ୟରେ ଲଙ୍ଗଳ ସିଆରରୁ ରକ୍ତାକ୍ତ ଶରୀରେ ଫୁଟି ବାହାରିଥିବା ବହୁ ପୁରାକାଳର ତନ୍ତ୍ର ତଥା ଶକ୍ତିପୀଠ ଏହି ଭୈରବୀଙ୍କ ମହିମା ଅବର୍ଣ୍ଣନୀୟ । ସେ ଆଜିର ଏ ପବିତ୍ର ଦିବସରେ ଏ ଅସ୍ଥି ପରମାଣବିକ ପୃଥିବୀକୁ ପ୍ରଳୟ ମୁଖରୁ ରକ୍ଷା କରି ସର୍ବବିଧ ମଙ୍ଗଳ ସାଧନ କରନ୍ତୁ ।

**ଧ୍ୟାନ :**

ଉଦ୍ୟଦ୍‌ଭାନୁ ସହସ୍ରକାନ୍ତି ମରୁଣ କ୍ଷୌମାଂ ଶିରୋମାଳିକାଂ ।
ରକ୍ତ ଲିପ୍ତ ପୟୋଧରାଂ ଜପବଟୀଂ ବିଦ୍ୟାମଭୀତିଂ ବରମ୍ ।
ହସ୍ତାବ୍‌ଜୈର୍ଦ୍ଦଧତୀଂ ତ୍ରିନେତ୍ର ବିଳସଦ୍‌ବକ୍ତ୍ରାର ବିନ୍ଦଶ୍ରୀୟମ୍ ।
ଦେବୀ ବଦ୍ଧ ହୀମାଂଶୁଂ ରକ୍ତ ମୁକୁଟାଂ ବନ୍ଦେ ସମନ୍ଦସ୍ମିତାମ୍ ।

ଅଧ୍ୟାପକ, ହଟଣୀ ମହାବିଦ୍ୟାଳୟ ।

# ଭୈରବ ଓ ଭୈରବୀ

* ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ମହାନ୍ତି

ବିଭିନ୍ନ ଧର୍ମଶାସ୍ତ୍ରକୁ ଅନୁଧ୍ୟାନ କଲେ ଜଣାଯାଏ 'ଭୀରୁ' ଶବ୍ଦ ଓ 'ଅ' ପ୍ରତ୍ୟୟରୁ ସୃଷ୍ଟି ହୋଇଥିବା ଭୈରବ ଏକ ଭୀଷଣ ଭୟଙ୍କର ମୂର୍ତ୍ତିବିଶେଷ । ଜଗତର ପ୍ରଳୟକାରୀ ଭୈରବଙ୍କ ଶକ୍ତି ହିଁ ଭୈରବୀ, 'ସେ' ଆଦ୍ୟାଶକ୍ତି । ସକଳ ଜଡ଼ ଜୀବସମୂହ ଶକ୍ତିର ଉତ୍ସ । ହିନ୍ଦୀ ଶବ୍ଦ ସାଗରରେ ପଞ୍ଚଭୈରବଙ୍କ ଶକ୍ତି ରୂପ ଯଥାକ୍ରମେ ତ୍ରିପୁର, କୌଳେଶ, ରୁଦ୍ର, ନିତ୍ୟା, ଚୈତନ୍ୟ ଭୈରବୀ ରୂପେ ବର୍ଣ୍ଣିତ । ଅନ୍ୟତ୍ର ଅଷ୍ଟ ଭୈରବଙ୍କ ଅଷ୍ଟ ଭୈରବୀ ଶକ୍ତି ରୂପେ ବିଦିତ । ଶବ୍ଦ କୋଷ ଆଦିରେ ଭୈରବ ଶବ୍ଦର ଏକାଧିକ ଅର୍ଥ ପରିଲକ୍ଷିତ । ଯଥା ଶରତ ଋତୁର ଆଦ୍ୟ ପୂର୍ବାହ୍ନରେ ଗାନ କରାଯାଉଥିବା ସପ୍ତସ୍ୱର ବିଶିଷ୍ଟ ଏକ ରାଗିଣୀ, ସ୍ରୋତସ୍ୱିନୀ ନଦୀ, ଗଙ୍ଗୋତ୍ରୀଠାରୁ ତିବ୍ବତକୁ ଲାଗିଥିବା ଏକ ଭୟଙ୍କର ହିମାବୃତ ପର୍ବତ ଗହ୍ୱର–ଘାଟି । ମହାଭାରତର ଆଦି ପର୍ବରେ ବର୍ଣ୍ଣିତ ଧୃତରାଷ୍ଟ୍ର ବଂଶଜ ଏକ ଭୟଙ୍କର ନାଗର ନାମ ବି ଭୈରବ ଦଶ ମହାବିଦ୍ୟାର ଷଷ୍ଠ ଦେବୀ 'ଛିନ୍ନମସ୍ତା' ହିଁ ଭୈରବଙ୍କ ଶକ୍ତି ସ୍ୱରୂପ ଭୈରବୀ । ଉପରୋକ୍ତ ସମସ୍ତ ଅର୍ଥରେ ଭୈରବ ବା ଭୈରବୀ ଭୀଷଣ ଭୟଙ୍କରୀ, ସଂହାରକାରିଣୀ ଶକ୍ତି । ହୁଏତ ସେ ଦେବୀ ବା ଦୈବୀଶକ୍ତି, ଜଳଶକ୍ତି, ଅଗ୍ନି, ବାୟୁ, ଧ୍ୱନିଜ ଶକ୍ତିବିଶେଷ ହୋଇପାରନ୍ତି କିନ୍ତୁ ସବୁଥିରେ ଅଦମନୀୟ ଭୀଷଣ ଶକ୍ତି ହିଁ ନିହିତ ।

ତନ୍ତ୍ରର ପ୍ରଧାନ ଦେବ ଭୈରବ ଓ ଦେବୀ ଭୈରବୀ । ଏହି ତନ୍ତ୍ରୋକ୍ତ ପ୍ରକାରେ ଶ୍ରୀଜଗନ୍ନାଥଙ୍କୁ ଭୈରବ ଓ ବିମଳାଙ୍କୁ ଭୈରବୀ ରୂପେ ଗ୍ରହଣ କରାଯାଇଥାଏ । ସନାତନ ଧର୍ମର ଆରାଧ୍ୟ ତିନିଦେବତାଙ୍କୁ ତନ୍ତ୍ର ଯୁଗରେ ଭୈରବ (ଜଗନ୍ନାଥ), ତ୍ରିପୁର ସୁନ୍ଦରୀ (ସୁଭଦ୍ରା), ଭୁବନେଶ୍ୱରୀ (ବଳଭଦ୍ର) ଆଦି ତିନି ବିଶିଷ୍ଟ ତନ୍ତ୍ର ଦେବତା ଭାବରେ ପୂଜିତ କରାଯାଉଥିଲା । ପଞ୍ଚମ'କାର ସାଧନାରେ ଭୈରବଙ୍କ ଶକ୍ତି ବିଶେଷା ଭୈରବୀ ପ୍ରଧାନ ତନ୍ତ୍ର ଦେବୀ । ତନ୍ତ୍ର ଶାସ୍ତ୍ର କୁଳାର୍ଣ୍ଣବ ମତରେ ତାନ୍ତ୍ରିକମାନେ ଚକ୍ରାକାରରେ ସଜ୍ଜିତ ହୋଇ ଭୈରବୀଙ୍କ ଆରାଧନା କରି ପ୍ରସାଦ ସେବନ କରିଥାନ୍ତି । ଏହି ଚକ୍ରକୁ ଭୈରବୀ ଚକ୍ର କୁହାଯାଇଥାଏ ଏବଂ ଭୈରବୀ ଚକ୍ରରେ ଅର୍ପିତ ଭୋଗ ଅଶଙ୍କ୍ରୁତି । ଜଗନ୍ନାଥଙ୍କ ଅବଢ଼ା ପ୍ରସାଦ ଏହାର ଏକ ସୁଦିବ୍ୟ ଦୃଷ୍ଟାନ୍ତ । ଶଙ୍ଖକ୍ଷେତ୍ର ନୀଳାଚଳଧାମ– ଭୈରବୀ ଚକ୍ର ଉପରେ ଅଧିଷ୍ଠିତ । 'ବିମଳା ଭୈରବୀ ଯନ୍ତ୍ର ଜଗନ୍ନାଥସ୍ତୁ ଭୈରବ' ଅର୍ଥାତ୍ ବିମଳା ଯେଉଁଠି ଭୈରବୀ ସେଠାର ପୀଠ ରକ୍ଷା ଭାବେ ଜଗନ୍ନାଥ ହିଁ ଭୈରବ, ଏପରି କୌଣସି ନା କୌଣସି ପ୍ରକାରେ ପ୍ରତ୍ୟେକ ଶକ୍ତିପୀଠମାନଙ୍କରେ ଭୈରବଙ୍କ କ୍ଷେତ୍ରମାନ ରହିଥିବା ଦେଖାଯାଏ । ଭୈରବୀଙ୍କୁ ମହାଶକ୍ତିର ପ୍ରତୀକ ରୂପେ ଆଲୋଚନା କଲାବେଳେ ବହୁତନ୍ତ୍ର ଶାସ୍ତ୍ର 'ଭଗ' ତଥା ଯୋନି ଚକ୍ରକୁ ହିଁ ଶକ୍ତି ରୂପେ ନେଇଥାନ୍ତି । ତେଣୁ ଶାକ୍ତମାନେ ଭଗବତୀ ଶକ୍ତି ତଥା ଯୋନି ଶକ୍ତିର ଉପାସକ ମଧ୍ୟ । ବ୍ରାହ୍ମଣ୍ୟ, ଶୈବ, ବୈଷ୍ଣବ ଧର୍ମ ଭଳି ଭୈରବ/ ଶାକ୍ତ ଏକ ସ୍ୱତନ୍ତ୍ର ସମ୍ପ୍ରଦାୟ । ଜଡ଼, ଜୀବ, ଜଳ, ଅନଳ, ବାୟୁ, ଆକାଶ ସବୁକିଛି ମାତୃଶକ୍ତି ଦେବୀ ଭୈରବୀଙ୍କଠାରୁ ଜନ୍ମ ନେଇଛନ୍ତି । ତେଣୁ ସେ ଦେବୀ ମାତୃରୂପିଣୀ । ପୁଣି ସଂସାରକୁ ପ୍ରଳୟ କାଳରେ ସ୍ୱଅଙ୍ଗରେ ଲୀନ କରାଇ ସେ ଧ୍ୱଂସ, ସଂହାର ଓ ପ୍ରଳୟକାରିଣୀ କାଳ ଭୈରବୀ, ସେ ଅବିନାଶୀ, ନିତ୍ୟା, ରକ୍ଷାକାରିଣୀ ମଧ୍ୟ । ମୋକ୍ଷସୌଖ୍ୟ ପ୍ରଦାୟିନୀ ମା' ଭୈରବୀଙ୍କୁ ଭୈରବୀ ଚକ୍ରରେ ଅଧିଷ୍ଠାନ କରାଇ କୁଣ୍ଡଳିନୀ ଯାଗ୍ରତ ପୂର୍ବକ ପଞ୍ଚ'ମ'କାର ତନ୍ତ୍ର ସାଧନା– ଫଳପ୍ରଦ ଓ ବେଦ ଶାସ୍ତ୍ରସମ୍ମତ ।

ଦେବ ଭୈରବଙ୍କ ବାହାନ ଏକ ଶ୍ୱାନ । ଯାହାକି ବାମାଚାରୀମାନଙ୍କ ମତରେ କାମ ତଥା ଯୋନିର ପ୍ରତୀକ ବୋଲି ବର୍ଣ୍ଣିତ । ସ୍ୱୟଂ ପ୍ରଭୁ ଜଗନ୍ନାଥ ତନ୍ତ୍ର ଦେବତା ଭୈରବ ହୋଇଥିବାରୁ ଏକ ଶ୍ୱାନକୁ ଭୈରବଙ୍କ ବାହାନ ରୂପେ ନିଆଯାଇଥିଲା । ଜଗନ୍ନାଥଙ୍କ ଶ୍ରୀମୂର୍ତ୍ତିର ବେଢ଼ ତଥା ବାହୁଡ଼ା ଯୌନକ୍ଷୁଧା ସମ୍ବଳିତ କେତେକ ଅଶ୍ଳୀଳ ବୋଲିବାଣୀ କରିବା ସମ୍ଭବତଃ ଅସଭ୍ୟ ସଂସ୍କୃତି ନହୋଇ ଏହା ତନ୍ତ୍ର ଦେବତା ଭୈରବଙ୍କ ଉପାସନା ପାଇଁ ଉଦ୍ଦିଷ୍ଟ ।

ଭୈରବ ଓ ଭୈରବୀଙ୍କ ବିଷୟରେ କାଳିକା ପୁରାଣ ଓ ହରିବଂଶରେ ଏକ ସୁନ୍ଦର ଆଖ୍ୟାୟିକା ବର୍ଣ୍ଣିତ । ଯଥା : ଅନ୍ଧକ ନାମକ ଏକ ପ୍ରବଳ ପ୍ରତାପୀ ରାକ୍ଷାସ ବ୍ରହ୍ମାଙ୍କ ବରରେ ବଳିୟାର ହୋଇ ଥରେ ଦେବୀ ପାର୍ବତୀଙ୍କ ସୌମ୍ୟ ରୂପ ଲାବଣ୍ୟରେ ବିମୋହିତ ହୋଇ ବଳପୂର୍ବକ ହରଣ କରିବାକୁ ଉଦ୍ୟତ ହେଲାବେଳେ ମହାଦେବଙ୍କ ସହ ଯୁଦ୍ଧ ହେଲା ଏବଂ ଅତ୍ୟାଚାରୀ ରାକ୍ଷାସର ଗଦାଘାତରେ ଶିବଙ୍କ ମସ୍ତକ ଫାଟି ରୁଧିରଧାର ହାଇ ରକ୍ତ ବୋହିବାକୁ ଲାଗିଲା । ପ୍ରଳୟ ତାଣ୍ଡବରତ କ୍ରୋଧାବିଷ୍ଟ ମହାଦେବଙ୍କ ମସ୍ତକନିସୃତ ରକ୍ତଧାରରୁ ମହାଭୈରବ, ସଂହାର ଭୈରବ, ଅସିତାଙ୍ଗ ଭୈରବ, ରୁରୁଭୈରବ, କାଳ ଭୈରବ, କ୍ରୋଧ

ଯଜ୍ଞ ପାଇଁ ବଧ କରାଯାଉଥିବା ପଶୁ ଯଦି ସ୍ୱର୍ଗକୁ ଯାଇପାରେ, ତେବେ ଯଜ୍ଞ କର୍ତ୍ତା ନିଜ ପିତାଙ୍କୁ ବଧ କରି ଯଜ୍ଞରେ ଆହୁତି ଦେବା ଉଚିତ । କାରଣ ପିତା ବଧ ହେବା କ୍ଷଣି ସିଧା ସ୍ୱର୍ଗକୁ ଚାଲିଯାନ୍ତେ ।

ପଶୁ ରକ୍ଷା ଓ ଅହିଂସା ସମ୍ବନ୍ଧୀୟ ଅନେକ ବିଧିବିଧାନରେ ଉଲ୍ଲିଖିତ । ପରାଶରଙ୍କ ସ୍ମୃତି ଅନୁଯାୟୀ :–

ଯସ୍ତୁ ପ୍ରାଣୀବଧଂକୃତ୍ୱା ଦେବା, ପିତୃଶ୍ଚତର୍ପୟେତ୍
ସୋବିଦ୍ୱାଂଶ ଚନ୍ଦନଂ, ଦଗ୍ଧ୍ୱାକୁର୍ଯ୍ୟାଦାଙ୍ଗରା ଲେପନମ୍ ।'

ଅର୍ଥାତ୍ ଚନ୍ଦନକୁ ଜାଳି ଅଙ୍ଗାର ଲେପନ କରିବା ଯାହା, ପ୍ରାଣୀମାନଙ୍କୁ ବଧ କରି ଦେବ ଓ ପିତୃଗଣଙ୍କୁ ମାଂସ ଅର୍ପଣ କରିବା ସେଷା । ପଶୁ ରକ୍ଷା ସମ୍ପର୍କରେ ଯଜୁର୍ବେଦରେ ମଧ୍ୟ ଉଲ୍ଲେଖ ରହିଛି :– 'ଯଜମାନସ୍ୟ ପଶୁନ୍ ପାହି' (ଯଜୁର୍ବେଦ ୧, ୧) ଆର୍ଥାତ୍ ଯଜ୍ଞକର୍ତ୍ତାଙ୍କ ପଶୁକୁ ରକ୍ଷାକର । 'ମାଂହିସୀ ତନ୍ୱା ପ୍ରଜାଃ' (ଯ:ବେ: ୧୨, ୩୨) ଅର୍ଥାତ୍ କୌଣସି ଜୀବର ଶରୀର ପ୍ରତି ହିଂସା କର ନାହିଁ । 'ଦ୍ୱିପାଦବଃ ଚତୁଷ୍ପଦ ପାହି' (ଯ:ବେ: ୧୪, ୮) ଅର୍ଥାତ୍ ମନୁଷ୍ୟ ଦ୍ୱିପାଦ ଓ ଚତୁଃପାଦ ଜୀବକୁ ରକ୍ଷା କରିବା ପାଇଁ ଶ୍ଳୋକମାନଙ୍କରେ ସ୍ପଷ୍ଟ ଭାବେ ଉଲ୍ଲେଖ କରାଯାଇଥିବା ବେଳେ ପଶୁବଳିକୁ ବୈଦିକ ଯଜ୍ଞାନୁଷ୍ଠାନର ମୁଖ୍ୟ ଅଂଶ ବୋଲି କହିବା ହାସ୍ୟାସ୍ପଦ ।

କିନ୍ତୁ ପରମ୍ପରାନୁଯାୟୀ ବାମାଚ୍ଚାରୀ ଗଡ୍ଡପାୟୀ ପିଶାଚମାନେ ଓ ହୀନ ସ୍ୱାର୍ଥାନ୍ୱେଷୀ ସଦବାଚ୍ୟ ଲୁବ୍ଧ ମାଂସାଶୀମାନେ ଶବ୍ଦଗୁଡ଼ିକର ଗୂଢ଼ ରହସ୍ୟକୁ ଭେଦ କରି ନପାରି ଇନ୍ଦ୍ରିୟ ଲାଳସା ନିମିତ୍ତ ମହାନ୍ ବେଦ ନାମରେ ଓ ଜଗଜ୍ଜନନୀଙ୍କ ପୂଜାର୍ଚ୍ଚନାରେ ନୃଶଂସ ପଶୁବଳି ପ୍ରବର୍ତ୍ତନ କରି ଧର୍ମ ଜଗତରେ ବିଭୀଷିକା ସୃଷ୍ଟି କରିଛନ୍ତି । ଶବ୍ଦର ଅର୍ଥ ରହସ୍ୟ ନିଗୂଢ଼ । ତେଣୁ 'ଆର୍ଯ୍ୟ' ଭାଷାରେ ଶବ୍ଦକୁ 'ବ୍ରହ୍ମ' ଭାବେ ସମ୍ବୋଧନ କରାଯାଇଛି ।

ଗୀତଗୋବିନ୍ଦର ରଚୟିତା ଜୟଦେବ, ଦଶଅବତାର ସ୍ତବରେ ଭଗବାନ ବୁଦ୍ଧଙ୍କ ବିଷୟରେ କହିଛନ୍ତି :–

'ନିନ୍ଦସି ଯଜ୍ଞ ବିଧେରହହ ଶ୍ରୁତିଜାତଂ,
ସଦୟ ହୃଦୟ ଦର୍ଶିତ ପଶୁଘାତଂ
କେଶବ ଧୃତ ବୁଦ୍ଧ ଶରୀର
ଜୟ ଜଗଦୀଶ ହରେ ।'

ସ୍ୱୟଂ ବ୍ୟାସଦେବ ମହାଭାରତରେ ଉଲ୍ଲେଖ କରିଛନ୍ତି :–

'ସୁରା, ମତ୍ସ୍ୟାନ୍, ମଧୁ, ମାଂସ ମାସବଂକୃଶରୌଦନମ୍ ।
ଧୂର୍ତ୍ତୈପ୍ରବର୍ତ୍ତିତଂ ହ୍ୟେତ ନୈତଦ୍ ବେଦେଷୁ କଳ୍ପିତମ୍ ।'

ଅର୍ଥାତ୍ ସୁରା, ମାଂସାଦି ସେବନ ସ୍ୱାର୍ଥବାଦୀମାନଙ୍କ ପ୍ରବର୍ତ୍ତିତ ଦୁଷ୍କର୍ମ, ଯାହାର ବିଧିବିଧାନ ବେଦରେ ଉଲ୍ଲେଖ କରାଯାଇ ନାହିଁ ।

'ଜୀବ ମାରି ଜୀବ ପୋଷେ ସେ ଜୀବ ବୈକୁଣ୍ଠେ ବସେ ।'

ସାଧାରଣ ଲୋକେ ଅନ୍ୟ ଜୀବର ମାଂସ ଖାଇ ସ୍ୱର୍ଗପ୍ରାପ୍ତି ହୁଏ ବୋଲି ବୁଝୁଥିବା ବେଳେ ସ୍ୱାର୍ଥାନ୍ୱେଷୀ ମାଂସାସୀମାନେ ଏହି ଅର୍ଥକୁ ମାଂସ ଭକ୍ଷଣାର୍ଥରେ ବ୍ୟବହାର କରୁଛନ୍ତି । କିନ୍ତୁ ଏଠାରେ ଜୀବମାରିବା ଅର୍ଥ ପ୍ରାଣୀବଧ ନୁହେଁ । ପାର୍ଥିବ ଲୋଭ, ମୋହ, ମାୟାକୁ ମାରିବା ବା ସେଥିରୁ ନିବୃତ୍ତ ହୋଇ ଜୀବ ପୋଷିବା ଅର୍ଥାତ୍ ନିଜ ଭିତରେ ଥିବା ସୋଽହଂ ବା ପରମାତ୍ମାଙ୍କ ସତ୍ତାକୁ ସ୍ୱର୍ଗମୁଖୀ କରାଇବା ଅର୍ଥରେ ବ୍ୟବହୃତ ।

'ବଳି'ର ଅର୍ଥ କ'ଣ ? ଏକାର୍ଥରେ ବଳି ଶବ୍ଦର ଅର୍ଥ ଭାଗ ବା ଅଂଶ ଏବଂ ଅନ୍ୟାର୍ଥରେ ବଳି ଶବ୍ଦର ଅର୍ଥ ଉତ୍ସର୍ଗ' । ଶାକ୍ତମାନଙ୍କ ମତାନୁଯାୟୀ ବଳି ବିନା କୌଣସି କାର୍ଯ୍ୟ ସାଧିତ ହୋଇପାରିବ ନାହିଁ । ଭଗବାନଙ୍କୁ ପାଇବାକୁ ହେଲେ ବଳି ଅନିବାର୍ଯ୍ୟ ।

ବୈଷ୍ଣବ ଓ ବୌଦ୍ଧ ପରମ୍ପରାକୁ ବାଦ୍ ଦେଇ ଶୈବ, ଜୈନ ଓ ସୌରମାନେ ମଧ୍ୟ ନିଜ ନିଜ ମନ୍ଦିରରେ ପୁଷ୍ପ, ଚନ୍ଦନ ଓ ଅର୍ଘ୍ୟ ପ୍ରଭୃତି ବଳି ଦେଇଥାନ୍ତି । ପ୍ରେମ ରୂପକ ଭକ୍ତିକୁ ମଧ୍ୟ ବଳି ଦେଇଥାନ୍ତି । ସୃଷ୍ଟିର ସକଳ ସାଧନା ଭିତରେ ରହିଛି 'ବଳି ବା ଉତ୍ସର୍ଗ' । ନିଜକୁ ବଳି ଦେବା ହିଁ ଉତ୍ସର୍ଗ । ଆତ୍ମବଳୀ ବ୍ୟତୀତ ଜ୍ଞାନ ଶକ୍ତି ଓ ପ୍ରେମ ମିଳିବା ଅସମ୍ଭବ । ପୌରାଣିକ ଯୁଗରେ ଅସୁରମାନେ ମଧ୍ୟ ନିଜ ଦେହକୁ କାଟି ବଳି ଦେଉଥିଲେ । କ୍ରମଶଃ ନିଜ ପରିବର୍ତ୍ତେ ନିଜର ପ୍ରିୟଜନକୁ ଉତ୍ସର୍ଗ କରିବା କଥା ପ୍ରଚଳିତ ହେଲା । କର୍ଣ୍ଣ ନିଜର ପ୍ରିୟ ପୁତ୍ର ବୃଷକେତୁକୁ ଉତ୍ସର୍ଗ କରିବା ବେଳେ ହରିଶ୍ଚନ୍ଦ୍ର ଏକମାତ୍ର ପୁତ୍ର ରୋହିତାଶ୍ୱକୁ ଉତ୍ସର୍ଗ କରିଥିଲେ ।

ଜନକଲ୍ୟାଣ ନିମନ୍ତେ ଆତ୍ମୋତ୍ସର୍ଗ ବୌଦ୍ଧ ଧର୍ମରେ ପ୍ରାଧାନ୍ୟ ବିସ୍ତାର କରିଛି । ସାଧକ ବୋଧିସତ୍ତ୍ୱ ହୋଇ ବୁଦ୍ଧତ୍ୱ ପାଇବା ପରେ ଜଗତର କଲ୍ୟାଣ ପାଇଁ ଚିର ଦୁଃଖ ବରଣ କରି ମାନବ ସମାଜକୁ ଆଲୋକ ପ୍ରଦାନ କଲେ ।

ବେଦ ଓ ପୁରାଣମାନଙ୍କରେ 'ପଶୁ ଯଜ୍ଞ' ବିଷୟ ଉଲ୍ଲେଖିତ । କିନ୍ତୁ ଦୁର୍ଭାଗ୍ୟ ଯେ କେତେକ ବାମମାର୍ଗୀ ତାନ୍ତ୍ରିକ ଓ ହୀନସ୍ୱାର୍ଥାନ୍ୱେଷୀ ପିଶାଚ ପଶୁ ଯଜ୍ଞରେ ପଶୁବଳି ଦେଇଥାନ୍ତି । କିନ୍ତୁ ବେଦର ବିଭିନ୍ନ ସ୍ଥାନରେ ଅଗ୍ନି, ବାୟୁ ଓ ସୂର୍ଯ୍ୟାଦିଙ୍କୁ ପଶୁ ଭାବେ ଅଭିହିତ କରାଯାଇଛି ।

ଯଜୁର୍ବେଦର (୨୩, ୧୭) ଶ୍ଳୋକରେ 'ଅଗ୍ନିଃ ପଶୁରାସୀତ......', 'ବାୟୁ ପଶୁରାସୀତ......' ଭାବେ ଉଲ୍ଲେଖ କରାଯାଇଛି । ଅଗ୍ନି, ବାୟୁ ଓ ସୂର୍ଯ୍ୟଙ୍କର ପ୍ରତ୍ୟକ୍ଷ ସମ୍ବନ୍ଧ ନଥିବା ଯଜ୍ଞକୁ 'ଅପଶୁ ଯଜ୍ଞ' ଓ ସମ୍ବନ୍ଧ ଥିବା ଯଜ୍ଞକୁ 'ପଶୁ ଯଜ୍ଞ' ଭାବେ ଅଭିହିତ କରାଯାଇଛି ।

ବ୍ରାହ୍ମଣ୍ୟ ଗ୍ରନ୍ଥ ବିରି ଓ ଯବ ପିଣ୍ଡର ବିଭିନ୍ନ ଅବସ୍ଥାକୁ ଲୋମ, ତ୍ୱକ, ମାଂସ, ଅସ୍ଥି ଓ ମଜ୍ଜା ରୂପେ ବର୍ଣ୍ଣନା କରିଥିବା ବେଳେ ବିରି ଓ ଯବରେ ପଞ୍ଚପଶୁଙ୍କ ଶ୍ରୀବିଦ୍ୟମାନ ବୋଲି ଉଲ୍ଲେଖ ରହିଛି । ବାମ ମାର୍ଗୀମାନେ ପଶୁବଳର ତାତ୍ପର୍ଯ୍ୟ ନବୁଝି ପଞ୍ଚପଶୁ ଅର୍ଥରେ ଗୋବର, ଅଶ୍ୱ, ମହିଷ, ଛେଳି ଓ ମେଣ୍ଢା ଏପରିକି ମନୁଷ୍ୟକୁ ମଧ୍ୟ ବଧ କରି ନରମେଧ, ଗୋମେଧ, ଅଶ୍ୱମେଧ, ଅଜମେଧ ଆଦି

# ଶକ୍ତି ପୂଜା ଓ ପଶୁ ବଳି

* ଶ୍ରୀ ମନୋରଞ୍ଜନ ପାଣିଗ୍ରାହୀ

ଭାରତରେ ଆଧ୍ୟାତ୍ମିକ ପରମ୍ପରା ଯୁଗଯୁଗ ଧରି ମାତୃ ଉପାସନାର ତତ୍ତ୍ୱ ଓ ଗୁରୁତ୍ୱ ଉପଲବ୍ଧି କରି ଆସିଛି । ଭାରତୀୟ ସଂସ୍କୃତି ଓ ଦର୍ଶନ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ଏହି 'ଶକ୍ତି' ଦର୍ଶନ ଦ୍ୱାରା ହିଁ ନିୟନ୍ତ୍ରିତ । ବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି, ପାଳନ ଓ ସଂହାର ଆଦି ଏହି ଶକ୍ତି ଉପରେ ହିଁ ନିର୍ଭର କରେ । ହିନ୍ଦୁ ଧର୍ମଧାରାର ପଞ୍ଚୋପାସନା ମଧ୍ୟରେ ଶକ୍ତି ଉପାସନାର ବୈଶିଷ୍ଟ୍ୟ ସର୍ବୋତ ଭାବେ ସ୍ୱୀକୃତ । ଶକ୍ତିଂ କରୋତି ବ୍ରହ୍ମାଣ୍ଡଂ ସର୍ବେ ପାଳୟତେ ଖିଳଂ ।' ବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି ଓ ପାଳନକର୍ତ୍ତ୍ରୀ ସେ ।

ସମଗ୍ର ମାନବ ଜାତିର ଇତିହାସ ପର୍ଯ୍ୟାଲୋଚନା କଲେ ଜଣାଯାଏ, ମାତୃ ଦେବତାର ପୂଜା ଅତି ପ୍ରାଚୀନ ଓ ବ୍ୟାପକ । ଶକ୍ତି ହିଁ ବିଶ୍ୱଜଗତରେ ପ୍ରମୁଖ ସମ୍ପର୍କୀୟା । 'ପୂଜା' ଶବ୍ଦ ମଧ୍ୟ ମହନୀୟ ଓ ପବିତ୍ର । ପୂଜା ଓ ଉପାସନାରେ ପବିତ୍ର ଭାବନା ନିହିତ ଥିବା ବେଳେ ଜଗଜ୍ଜନନୀଙ୍କ ପୂଜା ବିଧାନରେ ଜୀବ ହତ୍ୟା ଭଳି ହିଂସାତ୍ମକ ପ୍ରଥା ପ୍ରଚଳିତ କାହିଁକି ? ଏ ପ୍ରଶ୍ନ ଆଜି ଆଧୁନିକ ଶିକ୍ଷିତ ମନୁଷ୍ୟ ମନରେ ଘୋର ଆଲୋଡନ ସୃଷ୍ଟି କରିଛି ।

'ଅହିଂସା ହିଁ ପରମ ଧର୍ମ ।' ତଥାପି ଧର୍ମ ନାମରେ ପଶୁହତ୍ୟା, ମନୁଷ୍ୟର ହିଂସ୍ରତା ଓ ବର୍ବରତାକୁ ସ୍ପଷ୍ଟ ରୂପେ ସୂଚନା ଦେଉଛି । ସୃଷ୍ଟିର ପ୍ରତ୍ୟେକ ଜୀବ ଯେତେବେଳେ ମହାମାୟୀଙ୍କ ସନ୍ତାନ ତେବେ ମାଆ କେବେ ନିଜ ସନ୍ତାନର ରକ୍ତ ପାନ କରି ଆତ୍ମସନ୍ତୋଷ ଲାଭ କରିପାରିବ କି ।?

ଯାଗ, ଯଜ୍ଞ ମଧ୍ୟରେ ପଶୁବଳି ପ୍ରଥା ଆବହମାନକାଳରୁ ପ୍ରଚଳିତ ହୋଇଆସୁଛି । ପଶୁବଳି ସପକ୍ଷରେ ଅସଂଖ୍ୟ ଯୁକ୍ତି ଶାସ୍ତ୍ର ପୁରାଣମାନଙ୍କରେ ଉଲ୍ଲେଖ କରାଯାଇଥିବା ବେଳେ ବିପକ୍ଷରେ ମଧ୍ୟ ଅସଂଖ୍ୟ ଯୁକ୍ତି ଉପସ୍ଥାପିତ ହୋଇଛି । ମହାଭାରତ ଯୁଗ ପରେ ଶୁଦ୍ଧ ବୈଦିକ ପଣ୍ଡିତମାନଙ୍କର ଅଭାବ, ବାମମାର୍ଗୀ ତାନ୍ତ୍ରିକମାନଙ୍କର ପ୍ରାଧାନ୍ୟ ବୃଦ୍ଧି ଏବଂ ମହୀଧର, ସାୟଣାଚାର୍ଯ୍ୟଙ୍କ ଭଳି ମଧ୍ୟକାଳୀନ କର୍ମକାଣ୍ଡୀ ବୈଦିକ ଭାଷ୍ୟକାରୀମାନେ ବୈଦିକ ଶବ୍ଦର ବିକୃତ ଅର୍ଥ କରିବା ସଙ୍ଗେ ସଙ୍ଗେ ପ୍ରଶ୍ରୟ ଜାତିବାଦକୁ ପ୍ରଶସ୍ତ ଦେଇଛନ୍ତି । ବାମାଚାରୀମାନେ ପଶୁବଳିକୁ ପ୍ରାଧାନ୍ୟ ଦେଉଥିବାବେଳେ ଦକ୍ଷିଣାଚାରୀ ବୈଷ୍ଣବମାନେ ପାଣିକଖାରୁକୁ ବଳି ଦିଅନ୍ତି ।ବେଦରେ ପଶୁବଳି ପ୍ରଥାକୁ ସମ୍ପୂର୍ଣ୍ଣଭାବେ ନିନ୍ଦା କରାଯାଇଥିବା ବେଳେ ଶୈବ, ବୈଷ୍ଣବ, ଜୈନ ଓ ବୌଦ୍ଧ ଧର୍ମାବଲମ୍ବୀମାନେ ମଧ୍ୟ ଏହାର ବିରୁଦ୍ଧାଚରଣ କରିଛନ୍ତି ।

ବେଦରେ ପଶୁପାଳନ ଓ ପଶୁମାନଙ୍କ ସୁରକ୍ଷା ପାଇଁ ଅନେକ ସ୍ଥଳରେ ଉଲ୍ଲେଖ କରାଯାଇଥିବା ବେଳେ ପଶୁବଳିର କେତେକ ସମର୍ଥକ ତାନ୍ତ୍ରିକ ହିଂସ୍ରପନ୍ଥୀମାନେ ପଶୁବଳିକୁ ବୈଦିକ ଯଜ୍ଞାନୁଷ୍ଠାନର ଅଙ୍ଗ ବୋଲି ଘୋଷଣା କରିବା ସଙ୍ଗେ ସଙ୍ଗେ ବୈଦିକ ଯଜ୍ଞ କର୍ମରେ ପଶୁବଳିକୁ 'ବୈଦିକ ହିଂସା ହିଂସା ନ ଭବତି' ବୋଲି ଉଲ୍ଲେଖ କରିଛନ୍ତି ।

ଅନ୍ୟତଃ, ସ୍ମୃତିରେ ମାଂସ ଭକ୍ଷଣର ଆବଶ୍ୟକତା ଯୁଗଯୁଗ ଧରି ପ୍ରଚଳିତ । ଯେତେ ଧର୍ମବାଣୀ ପ୍ରକାଶ ପାଇଲେ ବି ସମାଜରୁ ଏହା ଲୋପ ପାଇ ନାହିଁ କି ଲୋପ ପାଇବା ସମ୍ଭବ ନୁହେଁ । ଶରୀର ରକ୍ଷା ପାଇଁ ମାଂସ ଭୋଜନ ଅପରିହାର୍ଯ୍ୟ । ଯେତେବେଳେ ଜୀବହତ୍ୟା ପରିତ୍ୟାଜ୍ୟ ସମ୍ଭବ କି ? ଏହା ଯଦି ସମ୍ଭବ ନୁହେଁ, ତା' ହେଲେ ପୂଜାବେଦୀରେ ନୈବେଦ୍ୟ ଭାବେ ତା'କୁ ସମର୍ପଣ କରି ପ୍ରସାଦ ରୂପେ ସେବନ କରିବାରେ ଆପତ୍ତି ବା କ'ଣ ?

କେତେକ କର୍ମକାଣ୍ଡୀ ବୈଦିକ ଭାଷ୍ୟକାରୀମାନେ ସଂକୀର୍ଣ୍ଣ ହୀନସ୍ୱାର୍ଥ ଚରିତାର୍ଥ ପାଇଁ ପଶୁବଳିର ପ୍ରାଧାନ୍ୟକୁ ସ୍ୱୀକାର କରିଛନ୍ତି ।

'ଔଷଧ୍ୟଃ, ପଶବୋ ବୃକ୍ଷାସ୍ତିର୍ଯ୍ୟଂଚ ପକ୍ଷିଣସ୍ତଥା । ଯଜ୍ଞାର୍ଥଂ ନିଧନଂ ପ୍ରାପ୍ତାଂ ପ୍ରାପ୍ନୁବନ୍ତ୍ୟୁଚ୍ଛ୍ରିତାଂ ଗତିନ୍ ।' ଅର୍ଥାତ୍ ଔଷଧ, ପଶୁ, ବୃକ୍ଷ, ପ୍ରାଣୀ ତଥା ପକ୍ଷୀମାନଙ୍କୁ ଯଜ୍ଞ ପାଇଁ ହତ୍ୟାକଲେ ସେମାନେ ସ୍ୱର୍ଗ ପ୍ରାପ୍ତି କରନ୍ତି । ସୁତରାଂ ପଶୁହତ୍ୟା ଦୋଷାବହ ନୁହେଁ । ତେଣୁ ପଶୁମାନଙ୍କୁ ହତ୍ୟା କରି ସେମାନଙ୍କୁ ସ୍ୱର୍ଗପ୍ରାପ୍ତି କରାଇବା ପାଇଁ ବାମାଚାରୀଗଣ ଗୁରୁତ୍ୱ ଆରୋପ କରିଛନ୍ତି ।

ଯଜ୍ଞରେ ବଳି ପ୍ରଥା ଦ୍ୱାରା ଜୀବର ସ୍ୱର୍ଗପ୍ରାପ୍ତି ହେବା ଭଳି ଉକ୍ତିମାନଙ୍କୁ ମହର୍ଷି 'ଚାର୍ବାକ୍' ତାଲକ୍ଷ୍ୟ କରି ସେହି କର୍ମକାଣ୍ଡୀ ବୈଦିକ ଭାଷ୍ୟକାରୀମାନଙ୍କୁ ପ୍ରଶ୍ନ କରିଛନ୍ତି ।

'ପଶୁଶ୍ଚେନ୍ନିହତଃ ସ୍ୱର୍ଗଂ ଜ୍ୟୋତିଷ୍ଟୋମେ ଗମିଷ୍ୟତି
ସ୍ୱପିତା ଯଜମାନେନ ତତ୍ର କସ୍ମାତ୍ ନହିଂସ୍ୟତେ ?'

# ଅହମୀକା ଶୋଷ

* ଅଧ୍ୟାପକ ବିକ୍ରମ କେଶରୀ ବର୍ମା

(୧)

ରକତ ନଦୀରେ ଶବ ଓଲଟାଇ
କିଏ ପୁଣି ଖୋଜୁଅଛୁ ମାନୀ ଦୁର୍ଯ୍ୟୋଧନ
କିଏ ତୁମ ଭାଇ ବନ୍ଧୁ କିଏ ପ୍ରତିବେଶୀ
କିଏ ହୋଇପାରେ ତୁମ କୁମର ଲକ୍ଷଣ ।

(୨)

ଆଜି ବି ରକତ ନଦୀ ବହୁଅଛି
କ୍ଷମତାର ଅଂହକାର ଚରିତାର୍ଥ ପାଇଁ
ଧର୍ମ ନାମେ ଦେଉ ବଳି
ପୂଜା ପୀଠ ପାଇଁ କଳି
ସବୁଠାରୁ ଶସ୍ତା ଆଜି ମଣିଷ ରକତ
ଲଢ଼ାଇ ତ ସରେ ନାହିଁ
କେତେ ସୂର୍ଯ୍ୟ ହୋଇଲେଣି ଅସ୍ତ ।

(୩)

ଇତିହାସ ପୁରାଣରେ
ମିଳିବନି ସଠିକ ହିସାବ
ରଖିଥିଲେ ହିସାବ ରଖିଥିବେ
ସୂର୍ଯ୍ୟ ଚନ୍ଦ୍ର ତାରା
ଅମୁହାଁ ଦେଉଳେ ପଶି
ଆମେ ଯେତେ ହୋଇଅଛୁ
ହଣା ହଣି ପରା ।

(୪)

ଅସ୍ତ୍ରକୁ ଫୋପାଡ଼ି ଏବେ "ରଣ ଛାଡ଼'
ହେବା ବନ୍ଧୁ ଆସ
ଶୁଖିଯିବ ରକ୍ତ ନଦୀ ଉତ୍ସ
ମେଣ୍ଟିଯିବ ଆମ ଅହମୀକା ଶୋଷ ।

---

ଅଧ୍ୟକ୍ଷ, ରାଜ୍ୟ ବିହନ ନିଗମ ।

ବିଭିନ୍ନ ଯଜ୍ଞ ପ୍ରଚଳନ କରିଥିଲେ । କିନ୍ତୁ ବ୍ରାହ୍ମଣ୍ୟ ଗ୍ରନ୍ଥ ସ୍ମୃତି ଶାସ୍ତ୍ର ତନ୍ତ୍ର ଶାସ୍ତ୍ରମାନଙ୍କ ଯଜ୍ଞ ପ୍ରକରଣରେ 'ଗୌ' ଅର୍ଥ ଗୋ–ଘୃତକୁ ଅଶ୍ୱ ଅର୍ଥରେ 'ତଣ୍ଡୁଳକଣା', 'ଅଜ' ଅର୍ଥରେ ପୁରୁଣା ଧାନ, 'ଧେନୁ' ଅର୍ଥରେ ଧାନ ଓ 'ମାଂସ' ଅର୍ଥରେ ଫଳର ମାଂସାଳ ଅଂଶକୁ ଗ୍ରହଣ କରିବା ପାଇଁ ସ୍ପଷ୍ଟ ଭାବେ ନିର୍ଦ୍ଦେଶ ଦିଆଯାଇଛି ।

ମହର୍ଷି 'ଗାର୍ଗାୟଣ' ଗୋମେଧ, ଅଶ୍ୱମେଧ, ଅଜମେଧ ଭଳି ବୈଦିକ ଶବ୍ଦଗୁଡ଼ିକର ତାତ୍ତ୍ୱିକ ଅର୍ଥ ବିଶ୍ଳେଷଣ କରିଛନ୍ତି । 'ଗୋ' ଅର୍ଥ ବାଣୀ 'ମେଧ' ଅର୍ଥ 'ବୁଦ୍ଧି' । ତେଣୁ ଗୋ–ମେଧ ଅର୍ଥ ବାଣୀକୁ ବୁଦ୍ଧି ସହ ସଂଯୋଗ କରିବା । ଠିକ୍ ସେଭଳି 'ଅଶ୍ୱ' ଅର୍ଥ ଜ୍ଞାନ 'ମେଧ' ଅର୍ଥ ଦାନ ତେଣୁ ଅଶ୍ୱମେଧ ଅର୍ଥକୁ ଜ୍ଞାନ ଦାନ ଭାବେ ସେ ଉଲ୍ଲେଖ କରିଛନ୍ତି । ତେଣୁ ପ୍ରାଚୀନ ରାଜାମାନେ ଅଶ୍ୱମେଧ ଯଜ୍ଞ କହିଲେ ରାଜ୍ୟରେ ବ୍ୟାପକ ଶିକ୍ଷାର ବିକାଶ ଘଟାଉଥିଲେ । ଆଶ୍ରୟସ୍ୱରୂପୀ ପରମାତ୍ମା ନର ବା ମନୁଷ୍ୟ ହେତୁ ସବୁ କିଛିକୁ ଈଶ୍ୱରଙ୍କ ଆଶ୍ରୟବୋଧ କରାଇବା ହିଁ ନରମେଧ । 'ଅଜ' ଅର୍ଥ 'ଅମର' । 'ମେଧ' ଅର୍ଥ ଜ୍ଞାନ । ତେଣୁ ଅମରତତ୍ତ୍ୱର ଜ୍ଞାନକୁ ହିଁ ଅଜମେଧ ଭାବେ ଗାର୍ଗାୟଣ ଉଲ୍ଲେଖ କରିଛନ୍ତି ।

ପ୍ରକୃତ ପକ୍ଷେ ଦେଖିବାକୁ ଗଲେ ଆତ୍ମୋତ୍ସର୍ଗ ହିଁ ବଳି । ମହାଭାରତ ଅନୁଶାସନ ପର୍ବରେ ବର୍ଣ୍ଣିତ ଚ୍ୟବନଙ୍କଠାରୁ ଆରମ୍ଭ କରି ବନ ପର୍ବର ଶିବ ଉପାଖ୍ୟାନ, ଭାଗବତର ବର୍ଣ୍ଣିତ ରନ୍ତିଦେବ ଓ ପ୍ରହ୍ଲାଦ ଜଗତରେ ଦୁଃଖମୋଚନ ପାଇଁ ନିଜର ଆତ୍ମୋତ୍ସର୍ଗ କରିଛନ୍ତି ।

ପଶୁବଳି ପରି ଘୃଣ୍ୟ କଳଙ୍କିତ ଓ ପୈଶାଚିକ ପ୍ରଥା ବିରୁଦ୍ଧରେ ପ୍ରତିବାଦର ସ୍ୱର ପ୍ରଥମେ ଭାରତରେ ହିଁ ଉତ୍ତୋଳିତ ହୋଇଥିଲା । ଏହି ଘୃଣ୍ୟ ପ୍ରଥାକୁ ପ୍ରଥମେ ବୁଦ୍ଧଦେବ ହିଁ ବିରୋଧ କରିଥିଲେ ।

ଦୟାନନ୍ଦ, ବିବେକାନନ୍ଦ ଓ ଗାନ୍ଧିଜୀଙ୍କ ଭଳି ଅସଂଖ୍ୟ ତପସ୍ୱୀ ଓ ସମାଜ ସଂସ୍କାରକ ଜୀବହତ୍ୟା ଭଳି ଘୃଣ୍ୟ ପ୍ରଥାକୁ ଘୋର ବିରୋଧ କରି ଆସିଛନ୍ତି । ଅସଂଖ୍ୟ ବିଦେଶୀ, ବିଦ୍ୱାନ ଓ ଧର୍ମାଚାର୍ଯ୍ୟମାନେ ଏହି କଳଙ୍କିତ ପରମ୍ପରାକୁ କଡ଼ୁ ସମାଲୋଚନା କରିଛନ୍ତି ।

ବିଶ୍ୱର ଅସଂଖ୍ୟ ବିଦ୍ୱାନ, ତପସ୍ୱୀ, ଧର୍ମାଚାର୍ଯ୍ୟ ଓ ସମାଜ ସଂସ୍କାରକମାନଙ୍କ କଡ଼ୁ କଟାକ୍ଷପାତ ସତ୍ତ୍ୱେ ଏବେ ବି ଅସଂଖ୍ୟ ଶକ୍ତିପୀଠରେ ଜୀବହତ୍ୟାର ବିଭୀଷିକା ଚାଲିଛି । ପୁରୀ ମନ୍ଦିର ଭଳି ପବିତ୍ର ସ୍ଥାନରେ ମହାଷ୍ଟମୀ ଦିନ ବିମଳାଙ୍କୁ ରକ୍ତାର୍ଘ୍ୟ ପ୍ରଦାନ କରାଯାଉଛି । ବର୍ତ୍ତମାନ ବି ବହୁ ଶାକ୍ତ ପୀଠମାନଙ୍କରେ ଛାଗ ଓ ମହିଷ ବଳି ପ୍ରଚଳିତ । ଶୈବ, ବୈଷ୍ଣବ, ବୌଦ୍ଧ ଓ ଜୈନ ଧର୍ମାବଲମ୍ବୀମାନେ ମଧ୍ୟ ପଶୁବଳିର ଘୃଣ୍ୟ ପ୍ରଥାକୁ ବିରୁଦ୍ଧାଚରଣ କରି କହିଛନ୍ତି :– ବଳିଦାନ ଯଦି ଦେବାକୁ ଚାହିଁ ତାହାହେଲେ ଅନ୍ତରର ରିପୁମାନଙ୍କୁ ବଳିଦିଅ । ଛାଗ, ମହିଷ ପ୍ରଭୃତିକୁ ବଳି ଦେଇ କ'ଣ ବା ପୁଣ୍ୟ ଅର୍ଜନ କରିବ ? ମନରେ ପ୍ରଶ୍ନ ଉଠେ ଏ ପ୍ରଥା ଆଉ କେତେଦିନ ଚାଲିବ ?

ଭାରତୀୟ ଶାକ୍ତ ପରମ୍ପରା ଧର୍ମଜଗତରେ ଏକ ପ୍ରମୁଖ ସ୍ଥାନ ଗ୍ରହଣ କରିଛି । ବେଦ, ଉପନିଷଦ, ରାମାୟଣ, ମହାଭାରତ, ପୁରାଣାଦି ଧର୍ମଗ୍ରନ୍ଥମାନଙ୍କରେ ଦେବୀଙ୍କ ମହାତ୍ମ୍ୟ ପ୍ରସିଦ୍ଧି ଅର୍ଜନ କରିଥିବା ବେଳେ କେତେକ ହୀନ ସ୍ୱାର୍ଥାନ୍ୱେଷୀ ଭଣ୍ଡପାଖଣ୍ଡୀ ଲୁବ୍ଧ ମାଂସାଶୀମାନେ ଶକ୍ତି ପୂଜାରେ ପଶୁବଳି ପ୍ରବର୍ତ୍ତନ କରି, ଧର୍ମ ଜଗତରେ ପଶୁବଳିର ଯେଉଁ ବିଭୀଷିକା ସୃଷ୍ଟି କରିଚାଲିଛନ୍ତି, ସେହି ଆସୁରୀ ଶକ୍ତିର ଶୋଷଣ, କଷଣ ଓ ପେଷଣରୁ ମାତୃଶକ୍ତି ଦୁର୍ଗା ମାନବ ସମାଜକୁ ଉଦ୍ଧାର କରନ୍ତୁ, ଏହା ହିଁ ସଙ୍କଟ ତାରିଣୀ ମା' ଦୁର୍ଗାଙ୍କ ନିକଟରେ ବିନମ୍ର ପ୍ରାର୍ଥନା ।

---

ଗ୍ରା:/ପୋ: କେଲୁଆ,
ଜି: ଗଞ୍ଜାମ–୭୬୧୧୧୯ ।



ସଚିବାଳୟଠାରେ ଅନୁଷ୍ଠିତ ଏକ ସାମ୍ବାଦିକ ସମ୍ମିଳନୀରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ପଲ୍ଲୁଆବର୍ଗଙ୍କ ପାଇଁ ସ୍ଥାନ ସଂରକ୍ଷଣ ଓ ଏକ କମିଶନ ଗଠନ ସମ୍ପର୍କରେ ଘୋଷଣା କରୁଛନ୍ତି ।

# ବନ୍ୟପ୍ରାଣୀ ସଂରକ୍ଷଣ – ଆମର କର୍ତ୍ତବ୍ୟ

* ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାନ୍ତି

ପ୍ରାଣୀ ଓ ଉଦ୍ଭିଦ ପରସ୍ପର ସୃଷ୍ଟିର ସହାୟକ । ମନୁଷ୍ୟ ସୃଷ୍ଟିର ଶ୍ରେଷ୍ଠ ପ୍ରାଣୀ ସତ କିନ୍ତୁ ମନୁଷ୍ୟ, ଜୀବଜନ୍ତୁ ଓ ଜଙ୍ଗଲ ସମ୍ପଦକୁ ନେଇ ଜୀବମଣ୍ଡଳର ପରିକଳ୍ପନା । ମାନବ ସମାଜର ସ୍ଥିତି ଓ ପରିପୋଷଣ ଉଦ୍ଭିଦ ଓ ଜୀବଜଗତ ଉପରେ ନିର୍ଭରଶୀଳ ।

କେଉଁ ଆବହମାନ କାଳରୁ ପ୍ରକୃତି ଓ ପରିବେଶ ସହିତ ମନୁଷ୍ୟର ମଧୁର ସମ୍ପର୍କ ରହି ଆସିଛି । ସୁଦୂର ଅତୀତର ପ୍ରାକୃତିକ ପରିବେଶ ଓ ଜୀବଜନ୍ତୁଙ୍କ ପ୍ରତି ସଚେତନତା ଆଜିର ସଭ୍ୟ ସମାଜର ଅବଦାନ ନୁହେଁ । ଯୁଗ ଯୁଗ ଧରି ଆମେ କେତେକ ନିର୍ଦ୍ଦିଷ୍ଟ ବୃକ୍ଷକୁ ପୂଜା କରିଆସୁଛୁ ଓ ବୃକ୍ଷ ରୋପଣ ଏକ ମହତ କାର୍ଯ୍ୟ ବୋଲି ଗ୍ରହଣ କରିଛେ । ସେହିପରି ଆମ ସାମାଜିକ ଚଳଣିର ଜୀବଜନ୍ତୁମାନଙ୍କୁ ସମ୍ମାନ ଦେବା ଉଦ୍ଦେଶ୍ୟରେ ଠାକୁର ଠାକୁରାଣୀଙ୍କ ବାହାନ ରୂପେ ଗ୍ରହଣ କରାଯାଇଛି । ଉଦାହରଣ ସ୍ୱରୂପ, କାର୍ତ୍ତିକେୟଙ୍କର ମୟୂର, ଶିବଙ୍କର ବୃଷଭ, ଦୁର୍ଗାଙ୍କର ସିଂହ, ସରସ୍ୱତୀଙ୍କର ହଂସ, ଗଣେଶଙ୍କର ମୂଷା, ଇନ୍ଦ୍ରଙ୍କର ଐରାବତ ହସ୍ତୀ ଓ ନାରାୟଣଙ୍କର ପକ୍ଷୀରାଜ ଗରୁଡ଼ । ଏହାଛଡ଼ା ସିଂହ, ମେଷ, ବୃଷ, କର୍କଟ ଇତ୍ୟାଦି ପ୍ରାଣୀମାନଙ୍କୁ ରାଶି ଉପରେ ସ୍ଥାନ ଦିଆଯାଇଛି ।

ଆମର କାବ୍ୟ, କବିତା, ନାଟକ, ଗଳ୍ପ ଓ ସାହିତ୍ୟ, ପଶୁ ପକ୍ଷୀଙ୍କ ବର୍ଣ୍ଣନାକୁ ନେଇ ସମୃଦ୍ଧ ହୋଇଛି । ସିଂହର ଠାଣି, ଗଜ ଏବଂ ହଂସର ଗତି, ବକର ଏକାଗ୍ରତା, କୁରଙ୍ଗର ଦୃଷ୍ଟି ଆମର କାବ୍ୟ କବିତାରେ ଉପମାର ବସ୍ତୁ ହୋଇ ରହିଛି । ବିଷ୍ଣୁ ଶର୍ମା କୃତ ହିତୋପଦେଶ ଓ ପଞ୍ଚତନ୍ତ୍ରରେ ପଶୁପକ୍ଷୀମାନଙ୍କ ମାଧ୍ୟମରେ ମଣିଷ ସମାଜକୁ ଧର୍ମନୀତି ଓ ରାଜନୀତି ଶିକ୍ଷା ଦିଆଯାଇଛି । ଓଡ଼ିଆ ମହାଭାରତରେ ଆଦିକବି ସାରଳା ଦାସ ନବଗୁଞ୍ଜର ନାମରେ ଏକ ବିଚିତ୍ର ଜୀବର ପରିକଳ୍ପନା କରିଛନ୍ତି । ଯେଉଁ ନଅଟି ପ୍ରାଣୀର ଅଙ୍ଗ ବିଶେଷକୁ ନେଇ ନବଗୁଞ୍ଜର କଳ୍ପନା କରାଯାଇଛି ସେଗୁଡ଼ିକ ହେଲା ମୟୂରର ମୁଣ୍ଡ, ବାଘ ଦେହର ଗାର, ଘୋଡ଼ାର ଶରୀର ଓ ଗୋଡ଼, ମଣିଷର ହାତ, ହାତୀର ଗୋଡ଼, ବାଘର ଗୋଡ଼, ବୃଷଭର କୁଦ, ଓ ସାପର ଲାଞ୍ଜ, ଏହି ନଅଟି ପ୍ରାଣୀର ଶରୀରର ଅଂଶ ବିଶେଷ ହିଁ ବିଭିନ୍ନ ପ୍ରକାର ଗୁଣର ନିଦର୍ଶନ, ଯଥା:–ମୟୂର ସୌନ୍ଦର୍ଯ୍ୟର ପ୍ରତିକ, ଘୋଡ଼ା ଶକ୍ତିର ପ୍ରତିକ, ବୃଷଭ ଧର୍ମର ପ୍ରତିକ, ହାତୀ ସ୍ଥିରତାର ପ୍ରତିକ, ସାପ, ହିଂସାତ୍ମ ଓ ବ୍ୟାଘ୍ର ହିଂସ୍ରତାର ପ୍ରତିକ, ସର୍ବୋପରି ମଣିଷ କେତେକ ଓ ବୁଦ୍ଧିର ପ୍ରତିକ ।ଭଗବାନ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ଏପରି ଏକ ଅଦ୍ଭୁତ ଜୀବ ରୂପେ ବନ ମଧ୍ୟରେ ଦର୍ଶନ ଦେଇଥିଲେ । ସମସ୍ତ ପ୍ରାଣୀଙ୍କୁ ନେଇ ଯେ ଏ ସୃଷ୍ଟି, ଏଥିରୁ ସୂଚନା ମିଳେ ।

ମଣିଷ ସମାଜ ଭଳି ବୃକ୍ଷଲତା ଓ ଜୀବଜନ୍ତୁ ପ୍ରକୃତିର ଭାରସାମ୍ୟ ରକ୍ଷାକରି ବଞ୍ଚି ରୁହନ୍ତି । ସୃଷ୍ଟିର ପ୍ରତ୍ୟେକ ଜୀବନର ସୀମିତ ଜୀବନ କାଳ ମଧ୍ୟରେ କିଛିନା କିଛି କର୍ମ କରିବାକୁ ପଡ଼ିଥାଏ । ମାଟି ଭିତରେ ଭରପୁର ରହିଥିବା ଅସଂଖ୍ୟ ଜୀବାଣୁ ପଚନ ପ୍ରକ୍ରିୟା ଦ୍ୱାରା ମୃତ ଜୈବିକ ବସ୍ତୁଗୁଡ଼ିକରୁ ଯବକ୍ଷାରଜାନକୁ ନେଇ ମାଟିରେ ମିଶାଇ ମାଟିର ଉର୍ବର ଶକ୍ତି ବୃଦ୍ଧି କରନ୍ତି ଓ ଥାଉ କେତେକ ଉଦ୍ଭିଦ ଜଗତରେ ବିଭିନ୍ନ ଅଂଶକୁ ବ୍ୟବହାର କରି ଅଙ୍ଗାରକାମ୍ଳ, ଜଳ ଓ ତାପ ସୃଷ୍ଟି କରିଥାନ୍ତି । ପ୍ରାଣୀମାନେ ଉଦ୍ଭିଦମାନଙ୍କର ପରାଗ ସଙ୍ଗମ କ୍ରିୟାରେ ସାହାଯ୍ୟ କରିଥାନ୍ତି ।

ପ୍ରକୃତିର ବିଧିବିଧାନ ଅତି ବିଚିତ୍ର । ପ୍ରକୃତିର ଭାରସାମ୍ୟ ରକ୍ଷା କରିବା ପାଇଁ ଗୋଟିଏ ଜୀବ ବା ପ୍ରାଣୀ ଅନ୍ୟ ଗୋଟିଙ୍କର ଖାଦ୍ୟ ହୋଇଥାଏ । ଶିକାରୀ ପ୍ରାଣୀମାନେ ନିଜର ଖାଦ୍ୟୋପଯୋଗୀ ପ୍ରାଣୀମାନଙ୍କୁ ଶିକାର କରି ଜୀବନ ଧାରଣ କରିବା ସଙ୍ଗେ ସଙ୍ଗେ ପ୍ରକୃତିର ସମତା ରକ୍ଷା କରିଥାନ୍ତି । ପ୍ରାକୃତିକ ପରିବେଶ ପରିଷ୍କାର ରଖିବାରେ ବନ୍ୟପ୍ରାଣୀମାନେ ସହାୟକ ହୁଅନ୍ତି । ଉଦାହରଣ ସ୍ୱରୂପ ହୁଣ୍ଡାଳ, ଗଧିଆ, ବିଲୁଆ, କୁକୁର, ଶାଗୁଣା, କୁଆ ଓ ଚିଲ ଇତ୍ୟାଦି ପ୍ରକୃତିର ଝାଡୁଦାର ରୂପେ କାମ କରିଥାନ୍ତି ।

ଦିନ ଥିଲା ଆମ ଦେଶ ବଣ ଅରଣ୍ୟରେ ଭରପୁର ଥିଲା । ଆମର ଅଭୟାରଣ୍ୟ, ନୈମିଷାରଣ୍ୟ, ଏଭଳି କାନନ, ଦଣ୍ଡକାରଣ୍ୟ, ପ୍ରତ୍ୟେକ ଜୀବଜନ୍ତୁଙ୍କୁ ଦେଇଥିଲା ଆଶ୍ରୟ । ତା'ର ଫଳ ସ୍ୱରୂପ ଅଗଣିତ ମୁନିଋଷିମାନଙ୍କ ପ୍ରଭାବରେ ଜନ୍ମ ନେଇଥିଲା ସତ୍ୟ ଅହିଂସାର ଦର୍ଶନ ।

ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଉନ୍ନତ ଜୀବନର ମାନ ବୃଦ୍ଧି ସହିତ ଜନସଂଖ୍ୟା ଦ୍ରୁତ ଗତିରେ ବୃଦ୍ଧି ପାଇଲା । କ୍ରମ ବର୍ଦ୍ଧିଷ୍ଣୁ ଜନସଂଖ୍ୟାକୁ ଖାଦ୍ୟ ଓ ବାସସ୍ଥାନ ଯୋଗାଇବା ପାଇଁ ଅଧିକରୁ ଅଧିକ ଜଙ୍ଗଲ କଟାଯାଇ ଚାଷ ଜମିରେ ପରିଣତ କରାଗଲା । ଶିଳ୍ପର ଅଭିବୃଦ୍ଧି ପାଇଁ ଜଙ୍ଗଲ କଟାଯାଇ କଳ କାରଖାନା

# ଅକାଳ ବୋଧନ

* ବନପ୍ରଭା ପରିଡ଼ା

ଅକ୍ଷୋଉର ଶତ ନୀଳପଦ୍ମ
ଫୁଟିବାର ଅବକାଶ ନାହିଁ
ଏଠି ପ୍ରଦୂଷିତ ନଦୀ–ପୁଷ୍କରିଣୀ,
ସ୍ୱାର୍ଥ ପାଇଁ ଭାଇ ରକ୍ତେ
ଭାଇ ହାତ ଲାଲ ହୁଏ
ଗଣ୍ଡରେ ଲୁହ ବୁହୁ
ସବୁଜ ଧରଣୀ
ବିଶ୍ୱାସୀ ମଣିଷଟିଏ
ବନ୍ଧୁ–ଭୃତ୍ୟ–ଶୁଭାକାଂକ୍ଷୀ ଭାବେ
ଏଠି–ସେଠି–କେଉଁଠି ମିଳେନି

ଜନନୀ !
କେଉଁ ଅର୍ଘ୍ୟ ଦେଇ ଆଜି
ଗାଇବି ମୁଁ ତୋ'ର ଆବାହନୀ ?
ନିତି ନିତି ଯେତେ ସବୁ
ଅନ୍ୟାୟ–ଅତ୍ୟାଚାର
ବିଭତ୍ସ ଘଟଣା
ଦେଖି ଦେଖି ଅନ୍ଧ ମୁଁ
ନୟନ ମୋ ଜ୍ୟୋତି ହୀନ
ପଦ୍ମର ପବିତ୍ରତା ନାହିଁ ଯେଣୁ
ତୋ'ପାଦରେ ଭେଟି ଦେବା ପାଇଁ
ଏ ମନରେ ପ୍ରତ୍ୟୟ ଆସେନା ।
ବିଲ୍ୱପତ୍ର ଶ୍ରୀଫଳରେ
ସନ୍ତୁଷ୍ଟ ହୁଅନ୍ତୁ ଅବା
ଅପନ୍ତରା ପଡ଼ିଆରେ
ଏଇତ ମୁଁ ବୃକ୍ଷଟିଏ ରୋପିବାକୁ
ଆରମ୍ଭ କରିଛି

ଫଳ–ପୁଷ୍ପ–ପଲ୍ଲବରେ
ପୂର୍ଣ୍ଣ ହେଲେ,
ତୋ' ଅର୍ଚ୍ଚନା କରିବାର
ବାସନା ରଖିଛି ।

ତଥାପି ଜନନୀ !
ତୁ' ଯେଣୁ ପ୍ରକୃତି ସ୍ୱରୂପା
ସୃଜନର ପ୍ରଥମ ଓଁକାର
ସୃଷ୍ଟିର ଏ ଧ୍ୱଂସକାଳେ
ପ୍ରତିକ୍ଷାର ନାହିଁ ଅବସର ।
ଏଠି ଏବେ ରାବଣର ମୁଣ୍ଡ ବଢ଼େ
ଭୁଜ ବଢ଼େ, ବିଶ୍ୱର ବିଭୀଷିକା ବଢ଼େ
ଦେବଅଂଶୀ ମଣିଷର ହୃଦୟରେ
ପରସ୍ତ ପରସ୍ତ ମାୟା,
ଶରତର ଆକାଶରେ
ଶ୍ରାବଣର ଲୁହବିନ୍ଦୁ ଝରେ ।
ପ୍ରହରଣ ଲୋଡ଼ା ନାହିଁ
ଅବତର ଜନନୀ ଗୋ
ପ୍ରତିଟି ହୃଦୟେ ।
ଦୟା–କ୍ଷମା–ଶାନ୍ତି–ଶକ୍ତି
ସମତା ରୂପରେ
ଅକାଳ ବୋଧନ ମା'ଗୋ
ସାର୍ଥକ ହେଉ ପୁଣି ଆଉଥରେ
ପୁଣ୍ୟ ଏ ଭାରତ ଭୂଇଁରେ ।।

---

ଗା:–ଟାଙ୍ଗିକଣ, ପୋ:–ଭକପଡ଼ା,
ଭାୟା–ବେହେରାର, ଜି–କଟକ ।

ଚ୍ଚୈରବ, ତାମ୍ରଚୂଡ଼ ଓ ଚନ୍ଦ୍ରଚୂଡ଼ ନାମକ ଅଷ୍ଟ ଭୈରବ ଜନ୍ମ ନେଇ ଅସୁରଙ୍କୁ ନିପାତ କଲେ । ଏହି ଅଷ୍ଟ ଭୈରବଙ୍କ ଶକ୍ତି ବିଶେଷଙ୍କୁ ଅଷ୍ଟ ଭୈରବୀ ରୂପେ ପୂଜା କରାଗଲା । କିନ୍ତୁ ଅଗ୍ନିପୁରାଣ– ଭୈରବଙ୍କ ଜନ୍ମ ସମ୍ବନ୍ଧରେ ଅନ୍ୟମତ ପ୍ରଦାନ କରେ । ଏକଦା ଶିବଙ୍କଠାରୁ ଏକ କୋପାନଳମୟ ଭୈରବ ମୂର୍ତ୍ତି ଜନ୍ମଲାଭ କରି ଜନ୍ମଦାତା ଶିବଙ୍କୁ ଅମାନ୍ୟ କରିବାକୁ ଲାଗିଲା ଓ ପରେ ସ୍ୱର୍ଗପୁର ଗମନ କରି ସମସ୍ତ ଦେବତାମାନଙ୍କୁ ଦମନ କରି ଅହଂଗର୍ବ ଆଧିପତ୍ୟ ବିସ୍ତାର କରିବାକୁ ଲାଗିଲା । ଶିବ ଏହି ଭୈରବଙ୍କ କାର୍ଯ୍ୟକଳାପ ଓ ମତ୍ତଗର୍ବରେ ଅସନ୍ତୁଷ୍ଟ ହୋଇ ଦମନକ/ଡାଡିରୀ ବୃକ୍ଷ ହୋଇଯିବା ପାଇଁ ଅଭିଶାପ ଦେଲେ, ମାତ୍ର ଭୈରବ ଶାପଗ୍ରସ୍ତ ହୋଇ କ୍ଷମାଭିକ୍ଷୁ ହେଲାରୁ: ବୃକ୍ଷ ହୋଇ ରହିଲେ ମଧ୍ୟ ଅନ୍ୟ ଦେବତାଙ୍କ ଭଳି ପୂଜାପାଇବ ବୋଲି ବରପ୍ରାପ୍ତ ହେଲେ । ସେ ଦିନରୁ ଏହି ଭୈରବ ଦମନକ ବୃକ୍ଷଭାବେ ଉପାସିତ ହୋଇ ଆସୁଥିବା ଜଣାଯାଏ ।

ଲିଙ୍ଗ ପୁରାଣ, ଶିବ ପୁରାଣ ଓ ଶତରୁ ସଂହିତାରେ ଭୈରବୀଙ୍କ ଆବିର୍ଭାବ ଭିନ୍ନ ଛାୟାରେ ଲିଖିତ । ଥରେ ବ୍ରହ୍ମା ଓ ବିଷ୍ଣୁ ସ୍ୱ ସ୍ୱ ଆସ ବଡ଼ିମାରେ ଗର୍ବିତ ହୋଇ ବିଶ୍ୱରୂପ ପ୍ରଦର୍ଶନ କଲାବେଳେ ନିମ୍ନଯୋଗୀ ବେଶଧାରୀ ଶିବଙ୍କୁ ଦେଖି ବ୍ରହ୍ମା ତାଚ୍ଛଲ୍ୟ କରିଥିଲେ । ଅପମାନକ୍ଳିଷ୍ଟ ଶିବଙ୍କ କ୍ରୋଧାଗ୍ନିରୁ ଏକ୍ ଭୈରବ ଉତ୍ପନ୍ନ ହୋଇ ଶିବଙ୍କ ନିର୍ଦ୍ଦେଶରେ ବ୍ରହ୍ମାଙ୍କ ପଞ୍ଚମ ମୁଖକୁ ଏକ ଚାପୁଡ଼ା ମାରି ସ୍କନ୍ଧଚ୍ୟୁତ କରନ୍ତେ ଏକ ଭୈରବ ବ୍ରହ୍ମହତ୍ୟା ଦୋଷରେ ଭାଗୀ ହେଲେ । ବ୍ରହ୍ମାଙ୍କର ସ୍କନ୍ଧଚ୍ୟୁତ ପଞ୍ଚମ ମୁଖଟି ଭୈରବଙ୍କ ହସ୍ତପଦ୍ମରେ ଲାଖି ରହିଗଲା । ଶିବ ଏ ଦୃଶ୍ୟ ଦେଖି ଓ ଭୈରବଙ୍କ ବ୍ରହ୍ମହତ୍ୟା ଦୋଷରୁ ମୁକ୍ତି ପାଇବା ପାଇଁ– ଭିକ୍ଷା ଆଚରଣ ପୂର୍ବକ ବିଭିନ୍ନ ପୁଣ୍ୟ ତୀର୍ଥାଟନ କରିବା ପାଇଁ ନିର୍ଦ୍ଦେଶ ଦେଲେ ଓ ଏହି ଭୈରବଙ୍କ ଅନୁଗାମୀ କରାଇବା ପାଇଁ ଏକ ଶକ୍ତି ଭୈରବୀଙ୍କୁ ଉତ୍ପନ୍ନ କରିଥିଲେ । ବ୍ରହ୍ମହତ୍ୟା ଦୋଷ ନିପୀଡ଼ିତ ଭୈରବ– ବ୍ରହ୍ମାଙ୍କର କପାଳକୁ ହସ୍ତରେ ଧରି ନାନାଦି ତୀର୍ଥାଟନ କଲେ ମଧ୍ୟ କପାଳ ହସ୍ତଚ୍ୟୁତ ହେଲା ନାହିଁ । ଶେଷରେ ବାରାଣସୀରେ ଭୈରବୀ ମା' ଅନ୍ନପୂର୍ଣ୍ଣାଙ୍କଠାରୁ ଅନ୍ନ ଗ୍ରହଣବେଳେ ଭୈରବଙ୍କ ହସ୍ତରେ ଲାଖି ରହିଥିବା ବ୍ରହ୍ମାଙ୍କ କପାଳ (ମସ୍ତକ) ତଳେ ନିପତିତ ହେଲା ଏବଂ ଭୈରବ ଶାପ ମୁକ୍ତ ହେବା ସଙ୍ଗେ ସଙ୍ଗେ ସେ ଦିନରୁ ବାରାଣସୀ କ୍ଷେତ୍ର 'କପାଳ ବିମୋଚନ ତୀର୍ଥ' ତଥା ଭୈରବୀ ପୀଠ ରୂପେ ଜନାଦୃତ ହେଲା ଓ ଦେବୀ ଅନ୍ନପୂର୍ଣ୍ଣା ଭୈରବୀ ରୂପରେ ଖ୍ୟାତ ହେଲେ ।

ଦେବୀ ପୁରାଣମାନଙ୍କରେ ବର୍ଣ୍ଣିତ ଯେ, ଦେବୀ ପାର୍ବତୀ ଦକ୍ଷ ଯଜ୍ଞରେ ପଡ଼ି ଦେହତ୍ୟାଗ କରନ୍ତେ ଦେବ ଦେବ ମହାଦେବ ପ୍ରଚଣ୍ଡ କ୍ରୋଧରେ ଜର୍ଜରିତ ଅତି ଭୟଙ୍କର ଭୈରବ ମୂର୍ତ୍ତି ଧାରଣ ପୂର୍ବକ ଶ୍ୱଶୁର ଦକ୍ଷଙ୍କୁ ବଧକରି ପତ୍ନୀ ପାର୍ବତୀଙ୍କ ଅର୍ଦ୍ଧ ଦଗ୍ଧ ଶରୀରକୁ କୋଳରେ ଧାରଣ କରି ପ୍ରଳୟକାଳୀନ ତାଣ୍ଡବ ନୃତ୍ୟ ଆରମ୍ଭ କଲେ । ଶିବଙ୍କ ଏତାଦୃଶ୍ୟ ନୃତ୍ୟରେ ଶଙ୍କିତ ଦେବଗଣ ନାରାୟଣଙ୍କୁ ଶିବକୋପ ଶାନ୍ତ ଉଦ୍ଦେଶ୍ୟରେ ପ୍ରାର୍ଥନା କଲେ । ନାରାୟଣ ଅଦୃଶ୍ୟରେ ସ୍ୱୀୟ ସୁଦର୍ଶନରେ ଦେବୀ ପାର୍ବତୀଙ୍କ ଶରୀରକୁ କାଟି ବିଚ୍ଛିନ୍ନ କରି ପକାଇଲେ । ଶିବ ପାର୍ବତୀଙ୍କ ଶରୀରକୁ ନ ପାଇ ଦେବଗଣଙ୍କ ପ୍ରାର୍ଥନାରେ ଶାନ୍ତ ରୂପ ଧାରଣ କରିଥିଲେ । ବିଷ୍ଣୁ ଚକ୍ର ଛେଦିତ ଦେବୀ ପାର୍ବତୀଙ୍କ ଅଙ୍ଗପ୍ରତ୍ୟଙ୍ଗ ନାନାସ୍ଥାନରେ ପଡ଼ି ଏକାବନଟି ଶକ୍ତିପୀଠ ଓ ଛବିଶଟି ଉପପୀଠ ସୃଷ୍ଟି ହେଲା ।

ଏଥିରୁ ଦେବୀଙ୍କ ଜଠଭାଗ ହର ଦ୍ୱାରରେ ପଡ଼ି ଭୈରବୀ ପୀଠ ସୃଷ୍ଟି ହେଲା । ଅନ୍ୟମତରେ ଦେଖାଯାଏ ଯେ : ଦେବୀଙ୍କ ପାଦ ଖଣ୍ଡରୁ ସୃଷ୍ଟି ହୋଇଥିବା ଜଗନ୍ନାଥଧାମ ବିମଳା ପୀଠ ଓ ଗଞ୍ଜାମ ମଣ୍ଡିତୀଷ୍ଠ (ଏକପାଦ ପଡ଼ି) ଭୈରବୀ ପୀଠ ବୋଲି ବର୍ଣ୍ଣନା କରାଯାଇଛି । ହରଦ୍ୱାରରେ ବଙ୍କ ଭୈରବ ଓ ପୁରୀ ଓ ଭୈରବୀ ପୀଠରେ ଜଗନ୍ନାଥ ପୀଠ ରକ୍ଷକ ରୂପେ ଅଧିଷ୍ଠିତ ।

ଅଗ୍ନିପୁରାଣରେ ମହାଭୈରବ ଓ ଭୈରବୀଙ୍କ ରୂପ ନିମ୍ନପ୍ରକାରେ ବର୍ଣ୍ଣିତ । ଦେବ ଭୈରବ ପଞ୍ଚମୁଖ, ମସ୍ତକରେ ବଙ୍କିମ ଚନ୍ଦ୍ର ସୁଶୋଭିତ ଜଟାଭାର, ବାହୁରେ କଂକଣ ରୂପୀ ସର୍ପାଳଙ୍କାର ବିଭୂଷଣ, ହସ୍ତରେ ଖଡ୍‌ଗ, ଧନୁ, ତୀର, ତ୍ରିଶୂଳ, ପିନାକ, କାଳପାଶ ଓ ଡ଼ମରୁ ଶୋଭିତ, ଶ୍ୱାନ ବାହାନ ପୃଷ୍ଠରେ ରୌଦ୍ରମୂର୍ତ୍ତି, ଉଗ୍ରତେଜା ଭୈରବ, ବ୍ୟାଘ୍ର ଓ ହସ୍ତୀ ଚର୍ମାବୃତା, ଭସ୍ମ ବିଲୋପିତ ଧୂସରକାୟ ତେଜଦ୍ୟୋତକ ଓ ପ୍ରଳୟଙ୍କର ଓଡ଼ିଶା ତଥା ପୂର୍ଣ୍ଣାଙ୍ଗୀ ଭାରତର ଗାଁ ଗହଳିରେ ଭୈରବ ଭୈରବୀ ଉପାସନା ଅତି ପ୍ରାଚୀନ ସଂସ୍କୃତି ଓ ପରମ୍ପରା ବିଜଡ଼ିତ । ତନ୍ତ୍ରଯୁଗ କାହିଁକି ବୌଦ୍ଧଯୁଗରେ ମଧ୍ୟ ପ୍ରଚଣ୍ଡ ନୃତ୍ୟରତ ଭୈରବଙ୍କ ମୂର୍ତ୍ତି ଦେଖିବାକୁ ମିଳେ ଓ ଉପାସନା ଚଳି ଆସୁଥିବା ପ୍ରମାଣ ବହୁଳ । ଏତଦ୍ବ୍ୟତୀତ ଶ୍ରାବଣ ପୂର୍ଣ୍ଣିମା ପରେ କୃଷ୍ଣ ପଞ୍ଚମୀ (ରକ୍ଷା ପଞ୍ଚମୀ) ଦିନ ଭୈରବଙ୍କ ପୂଜା କରାଯାଇଥାଏ । ଏ ଦିନ ପ୍ରତ୍ୟୁଷରୁ ଶୁଚିସ୍ନାତ ହୋଇ ମୁଖ୍ୟ ଦରଜାରେ ଏକ ପଦ ବିଶିଷ୍ଟ ଭୈରବଙ୍କ ମୂର୍ତ୍ତି ଓ ଭୈରବୀ ଚକ୍ର ଆଙ୍କି ଦୂବ, ଅକ୍ଷତ, ହଳଦୀ, ଚନ୍ଦନ, ସିନ୍ଦୁର ଓ ଗୁବାକ ରଞ୍ଜିତ କରାଇ ଭୈରବାଦିଙ୍କ ପୂଜାର ଉପାସନା କରାଯାଏ । ଚନ୍ଦନ ଓ ସିନ୍ଦୂରରେ "ଘଣ୍ଟାକର୍ଣ୍ଣ ମହାବ୍ୟାଧି ନିବାରକ" ବୋଲି ମନ୍ତ୍ର ଲେଖାଯାଏ । ଲୋକଙ୍କ ମନରେ ପ୍ରଗାଢ଼ ବିଶ୍ୱାସ ଯେ, ଦେବ ଭୈରବ ଓ ଦେବୀ ଭୈରବୀ ହିଁ ସର୍ବଲୋକର ରକ୍ଷାକର୍ତ୍ତା ଓ ରକ୍ଷାକର୍ତ୍ତ୍ରୀ ।

ପରିପ୍ରେକ୍ଷୀରେ ଦକ୍ଷିଣ ଓଡ଼ିଶାର ବ୍ରହ୍ମପୁର ନିକଟବର୍ତ୍ତୀ ପ୍ରସିଦ୍ଧ ଦେବୀ ଏକପାଦ ଭୈରବୀ ପୀଠର, ପୁଜାକୀର୍ତ୍ତନ ଲକ୍ଷଣୀୟ । ଭୂମି ମଧ୍ୟରେ ଲଙ୍ଗଳ ସିଆରରୁ ରକ୍ତାକ୍ତ ଶରୀରେ ଫୁଟି ବାହାରିଥିବା ବହୁ ପୁରାକାଳର ତନ୍ତ୍ର ତଥା ଶକ୍ତିପୀଠ ଏହି ଭୈରବୀଙ୍କ ମହିମା ଅବର୍ଣ୍ଣନୀୟ । ସେ ଆଜିର ଏ ପବିତ୍ର ଦିବସରେ ଏ ଘୋର ପରମାଣବିକ ପୃଥିବୀକୁ ପ୍ରଳୟ ମୁଖରୁ ରକ୍ଷା କରି ସର୍ବବିଧ ମଙ୍ଗଳ ସାଧନ କରନ୍ତୁ ।

ଧ୍ୟାନ :

ଉଦ୍ୟଦ୍‌ଭାନୁ ସହସ୍ରକାନ୍ତି ମରୁଣ କ୍ଷୌମାଂ ଶିରୋମାଳିକାଂ ।
ରକ୍ତ ଲିପ୍ତ ପୟୋଧରାଂ ଜପବଟୀଂ ବିଦ୍ୟାମଭୀତିଂ ବରମ୍ ।
ହସ୍ତାବଯୈର୍ଦ୍ଦଧତୀଂ ତ୍ରିନେତ୍ର ବିଳସଦ୍ବକ୍ତ୍ରାର ବିନ୍ଦଶ୍ରୀୟମ୍ ।
ଦେବୀ ବଦ୍ଧ ହୀମାଂଶୁଂ ରକ୍ତ ମୁକୁଟାଂ ବନ୍ଦେ ସମନ୍ଦସ୍ମିତାମ୍ ।

ଅଧ୍ୟାପକ, ଉଟଣୀ ମହାବିଦ୍ୟାଳୟ ।

# ଭୈରବ ଓ ଭୈରବୀ

* ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ମହାନ୍ତି

ବିଭିନ୍ନ ଧର୍ମଶାସ୍ତ୍ରକୁ ଅନୁଧ୍ୟାନ କଲେ ଜଣାଯାଏ 'ଭୀରୁ' ଶବ୍ଦ ଓ 'ଅ' ପ୍ରତ୍ୟୟରୁ ସୃଷ୍ଟି ହୋଇଥିବା ଭୈରବ ଏକ ଭୀଷଣ ଭୟଙ୍କର ମୂର୍ତ୍ତିବିଶେଷ । ଜଗତର ପ୍ରଳୟକାରୀ ଭୈରବଙ୍କ ଶକ୍ତି ହିଁ ଭୈରବୀ, 'ସେ' ଆଦ୍ୟାଶକ୍ତି । ସକଳ ଜଡ଼ ଜୀବସମୂହ ଶକ୍ତିର ଉତ୍ସ । ହିନ୍ଦୀ ଶବ୍ଦ ସାଗରରେ ପଞ୍ଚଭୈରବଙ୍କ ଶକ୍ତି ରୂପ ଯଥାକ୍ରମେ ତ୍ରିପୁର, କୌଳେଶ, ରୁଦ୍ର, ନିତ୍ୟା, ଚୈତନ୍ୟ ଭୈରବୀ ରୂପେ ବର୍ଣ୍ଣିତ । ଅନ୍ୟତ୍ର ଅଷ୍ଟ ଭୈରବଙ୍କ ଅଷ୍ଟ ଭୈରବୀ ଶକ୍ତି ରୂପେ ବିଦିତ । ଶବ୍ଦ କୋଷ ଆଦିରେ ଭୈରବ ଶବ୍ଦର ଏକାଧିକ ଅର୍ଥ ପରିଲକ୍ଷିତ । ଯଥା ଶରତ ଋତୁର ଆଦ୍ୟ ପୂର୍ବାହ୍ନରେ ଗାନ ହୋଇଥାଉଥିବା ସପ୍ତସ୍ୱର ବିଶିଷ୍ଟ ଏକ ରାଗିଣୀ, ସ୍ରୋତସ୍ୱିନୀ ନଦୀ, ଗଙ୍ଗୋତ୍ରୀଠାରୁ ତିବ୍ବତକୁ ଲାଗିଥିବା ଏକ ଭୟଙ୍କର ହିମାବୃତ ପର୍ବତ ପଥର-ଘାଟି । ମହାଭାରତର ଆଦି ପର୍ବରେ ବର୍ଣ୍ଣିତ ଧୃତରାଷ୍ଟ୍ର ବଂଶର ଏକ ଭୟଙ୍କର ନାଗର ନାମ ବି ଭୈରବ ଦଶ ମହାବିଦ୍ୟାର ଷଷ୍ଠ ଦେବୀ 'ଛିନ୍ନମସ୍ତା' ହିଁ ଭୈରବଙ୍କ ଶକ୍ତି ସ୍ୱରୂପ ଭୈରବୀ । ଉପରୋକ୍ତ ସମସ୍ତ ଅର୍ଥରେ ଭୈରବ ବା ଭୈରବୀ ଭୀଷଣ ଭୟଙ୍କରୀ, ସଂହାରକାରିଣୀ ଶକ୍ତି । ହୁଏତ ସେ ଦେବୀ ବା ଦୈବୀଶକ୍ତି, ଜଳଶକ୍ତି, ଅଗ୍ନି, ବାୟୁ, ଧ୍ୱନିଜ ଶକ୍ତିବିଶେଷ ହୋଇପାରନ୍ତି କିନ୍ତୁ ସବୁଥିରେ ଅଦମନୀୟ ଭୀଷଣ ଶକ୍ତି ହିଁ ନିହିତ ।

ତନ୍ତ୍ରର ପ୍ରଧାନ ଦେବ ଭୈରବ ଓ ଦେବୀ ଭୈରବୀ । ଏହି ଉକ୍ତ ପ୍ରକାରେ ଶ୍ରୀଜଗନ୍ନାଥଙ୍କୁ ଭୈରବ ଓ ବିମଳାଙ୍କୁ ଭୈରବୀ ରୂପେ ଗ୍ରହଣ କରାଯାଇଥାଏ । ସନାତନ ଧର୍ମର ଆରାଧ୍ୟ ତିନିଦେବତାଙ୍କୁ ତନ୍ତ୍ର ଯୁଗରେ ଭୈରବ (ଜଗନ୍ନାଥ), ତ୍ରିପୁର ସୁନ୍ଦରୀ (ସୁଭଦ୍ରା), ଭୁବନେଶ୍ୱରୀ (ବଳଭଦ୍ର) ଆଦି ତିନି ବିଶିଷ୍ଟ ତନ୍ତ୍ର ଦେବତା ଭାବରେ ପୂଜିତ କରାଯାଉଥିଲା । ପଞ୍ଚମ'କାର ସାଧନାରେ ଭୈରବଙ୍କ ଶକ୍ତି ବିଶେଷା ଭୈରବୀ ପ୍ରଧାନ ତନ୍ତ୍ର ଦେବୀ । ତନ୍ତ୍ର ଶାସ୍ତ୍ର କୁଳାର୍ଣ୍ଣବ ମତରେ ତାନ୍ତ୍ରିକମାନେ ଚକ୍ରାକାରରେ ସଜ୍ଜିତ ହୋଇ ଭୈରବୀଙ୍କ ଆରାଧନା କରି ପ୍ରସାଦ ସେବନ କରିଥାନ୍ତି । ଏହି ଚକ୍ରକୁ ଭୈରବୀ ଚକ୍ର କୁହାଯାଇଥାଏ ଏବଂ ଭୈରବୀ ଚକ୍ରରେ ଅଛିତ ଭୋଗ ପରଶୁଦ୍ଧି । ଜଗନ୍ନାଥଙ୍କ ଅବଢ଼ା ପ୍ରସାଦ ଏହାର ଏକ ସୁବିଦ୍ୟ ଦୃଷ୍ଟାନ୍ତ । ଶଙ୍ଖକ୍ଷେତ୍ର ନୀଳାଚଳଧାମ– ଭୈରବୀ ଚକ୍ର ଉପରେ ଅଧିଷ୍ଠିତ । 'ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବ' ଅର୍ଥାତ୍ ବିମଳା ଯେଉଁଠି ଭୈରବୀ ସେଠାର ପୀଠ ରକ୍ଷା ଭାବେ ଜଗନ୍ନାଥ ହିଁ ଭୈରବ, ଏପରି କୌଣସି ନା କୌଣସି ପ୍ରକାରେ ପ୍ରତ୍ୟେକ ଶକ୍ତିପୀଠମାନଙ୍କରେ ଭୈରବଙ୍କ କ୍ଷେତ୍ରମାନ ରହିଥିବା ଦେଖାଯାଏ । ଭୈରବୀଙ୍କୁ ମହାଶକ୍ତିର ପ୍ରତୀକ ରୂପେ ଆଲୋଚନା କଲାବେଳେ ବହୁତନ୍ତ୍ର ଶାସ୍ତ୍ର 'ଭଗ' ତଥା ଯୋନି ଚକ୍ରକୁ ହିଁ ଶକ୍ତି ରୂପେ ନେଇଥାନ୍ତି । ତେଣୁ ଶାକ୍ତମାନେ ଭଗବତୀ ଶକ୍ତି ତଥା ଯୋନି ଶକ୍ତିର ଉପାସକ ମଧ୍ୟ । ବ୍ରାହ୍ମଣ୍ୟ, ଶୈବ, ବୈଷ୍ଣବ ଧର୍ମ ଭଳି ଭୈରବ/ ଶାକ୍ତ ଏକ ସ୍ୱତନ୍ତ୍ର ସମ୍ପ୍ରଦାୟ । ଜଡ଼, ଜୀବ, ଜଳ, ଅନଳ, ବାୟୁ, ଆକାଶ ସବୁକିଛି ମାତୃଶକ୍ତି ଦେବୀ ଭୈରବୀଙ୍କଠାରୁ ଜନ୍ମ ନେଇଛନ୍ତି । ତେଣୁ ସେ ଦେବୀ ମାତୃରୂପିଣୀ । ପୁଣି ସଂସାରକୁ ପ୍ରଳୟ କାଳରେ ସ୍ୱଅଙ୍ଗରେ ଲୀନ କରାଇ ସେ ଧ୍ୱଂସ, ସଂହାର ଓ ପ୍ରଳୟକାରିଣୀ କାଳ ଭୈରବୀ, ସେ ଅବିନାଶୀ, ନିତ୍ୟା, ରକ୍ଷାକାରିଣୀ ମଧ୍ୟ । ମୋକ୍ଷସୌଖ୍ୟ ପ୍ରଦାୟିନୀ ମା' ଭୈରବୀଙ୍କୁ ଭୈରବୀ ଚକ୍ରରେ ଅଧିଷ୍ଠାନ କରାଇ କୁଣ୍ଡଳିନୀ ଯାଗ୍ରତ ପୂର୍ବକ ପଞ୍ଚ'ମ'କାର ତନ୍ତ୍ର ସାଧନା– ଫଳପ୍ରଦ ଓ ବେଦ ଶାସ୍ତ୍ରସମ୍ମତ ।

ଦେବ ଭୈରବଙ୍କ ବାହାନ ଏକ ଶ୍ୱାନ । ଯାହାକି ବାମାଶ୍ରୟୀମାନଙ୍କ ମତରେ କାମ ତଥା ଯୋନିର ପ୍ରତୀକ ବୋଲି ବର୍ଣ୍ଣିତ । ସ୍ୱୟଂ ପ୍ରଭୁ ଜଗନ୍ନାଥ ତନ୍ତ୍ର ଦେବତା ଭୈରବ ହୋଇଥିବାରୁ ଏକ ଶ୍ୱାନକୁ ଭୈରବଙ୍କ ବାହାନ ରୂପେ ନିଆଯାଇଥିଲା । ଜଗନ୍ନାଥଙ୍କ ଶ୍ରୀମୁଣ୍ଡିଚ୍ଚ ବେଳ ରଥ ବାହୁକ ଯୌନକ୍ଷୁଧା ସମ୍ବଳିତ କେତେକ ଅଶ୍ଳୀଳ ବୋଲିବାଣୀ କରିବା ସମ୍ଭବତଃ ଅସଭ୍ୟ ସଂସ୍କୃତି ନହୋଇ ଏହା ତନ୍ତ୍ର ଦେବତା ଭୈରବଙ୍କ ଉପାସନା ପାଇଁ ଉଦ୍ଦିଷ୍ଟ ।

ଭୈରବ ଓ ଭୈରବୀଙ୍କ ବିଷୟରେ କାଳିକା ପୁରାଣ ଓ ହରିବଂଶରେ ଏକ ସୁନ୍ଦର ଆଖ୍ୟାୟିକା ବର୍ଣ୍ଣିତ । ଯଥା : ଅନ୍ଧକ ନାମକ ଏକ ପ୍ରବଳ ପ୍ରତାପୀ ରାକ୍ଷସ ବ୍ରହ୍ମାଙ୍କ ବରରେ ବଳିୟାର ହୋଇ ଥରେ ଦେବୀ ପାର୍ବତୀଙ୍କ ସୌମ୍ୟ ରୂପ ଲାବଣ୍ୟରେ ବିମୋହିତ ହୋଇ ବଳପୂର୍ବକ ହରଣ କରିବାକୁ ଉଦ୍ୟତ ହେଲାବେଳେ ମହାଦେବଙ୍କ ସହ ଯୁଦ୍ଧ ହେଲା ଏବଂ ଅତ୍ୟାଚାରୀ ରାକ୍ଷସର ଗଦାଘାତରେ ଶିବଙ୍କ ମସ୍ତକ ଫାଟି ରୁଧିରଧାର ଛାଇ ରକ୍ତ ବୋହିବାକୁ ଲାଗିଲା । ପ୍ରଳୟ ତାଣ୍ଡବରତ କ୍ରୋଧାବିଷ୍ଟ ମହାଦେବଙ୍କ ମସ୍ତକନିସୃତ ରକ୍ତଧାରରୁ ମହାଭୈରବ, ସଂହାର ଭୈରବ, ଅସିତାଙ୍ଗ ଭୈରବ, ରୁରୁଭୈରବ, କାଳ ଭୈରବ, କ୍ରୋଧ

ଯଜ୍ଞ ପାଇଁ ବଧ କରାଯାଉଥିବା ପଶୁ ଯଦି ସ୍ୱର୍ଗକୁ ଯାଇପାରେ, ତା'ହେଲେ ଯଜ୍ଞ କର୍ତ୍ତା ନିଜ ପିତାଙ୍କୁ ବଧ କରି ଯଜ୍ଞରେ ଆହୁତି ଦେବା ଉଚିତ । କାରଣ ପିତା ବଧ ହେବା କ୍ଷଣି ସିଧା ସ୍ୱର୍ଗକୁ ଚାଲିଯାନ୍ତେ ।

ପଶୁ ରକ୍ଷା ଓ ଅହିଂସା ସମ୍ବନ୍ଧୀୟ ଅନେକ ବିଧିବିଧାନରେ ଉଲ୍ଲିଖିତ । ପରାଶରଙ୍କ ସ୍ମୃତି ଅନୁଯାୟୀ :–

ଯସ୍ତୁ ପ୍ରାଣୀବଧଂକୃତ୍ୱା ଦେବା, ପିତୃଣ୍ଣତର୍ପୟେତ୍
ସୋବିଦ୍ୱାଂଶ ଚନ୍ଦନଂ, ଦଗ୍‌ଧ୍ୱାକୁର୍ଯ୍ୟାଦାଙ୍ଗାରା ଲେପନମ୍ ।'

ଅର୍ଥାତ୍ ଚନ୍ଦନକୁ ଜାଳି ଅଙ୍ଗାର ଲେପନ କରିବା ଯାହା, ପ୍ରାଣୀମାନଙ୍କୁ ବଧ କରି ଦେବ ଓ ପିତୃଗଣଙ୍କୁ ମାଂସ ଅର୍ପଣ କରିବା ସେଥା । ପଶୁ ରକ୍ଷା ସମ୍ପର୍କରେ ଯଜୁର୍ବେଦରେ ମଧ୍ୟ ଉଲ୍ଲେଖ ରହିଛି :– 'ଯଜମାନସ୍ୟ ପଶୁନ୍ ପାହି' (ଯେଜୁର୍ବେଦ ୧, ୧) ଅର୍ଥାତ୍ ଯଜ୍ଞକର୍ତ୍ତାଙ୍କ ପଶୁକୁ ରକ୍ଷାକର । 'ମାଂହିସୀ ତନ୍ୱା ପ୍ରଜାଃ' (ଯ:ବେଃ ୧୨, ୩୦) ଅର୍ଥାତ୍ କୌଣସି ଜୀବର ଶରୀର ପ୍ରତି ହିଂସା କର ନାହିଁ । 'ଦ୍ୱିପାଦବଃ ଚତୁଷ୍ପଦ ପାହି' (ଯ:ବେଃ ୧୪, ୮) ଅର୍ଥାତ୍ ମନୁଷ୍ୟ ଦ୍ୱିପାଦ ଓ ଚତୁଃପାଦ ଜୀବକୁ ରକ୍ଷା କରିବା ପାଇଁ ଶ୍ଳୋକମାନଙ୍କରେ ସ୍ପଷ୍ଟ ଭାବେ ଉଲ୍ଲେଖ କରାଯାଇଥିବା ବେଳେ ପଶୁବଳିକୁ ବୈଦିକ ଯଜ୍ଞାନୁଷ୍ଠାନର ମୁଖ୍ୟ ଅଂଶ ବୋଲି କହିବା ହାସ୍ୟାସ୍ପଦ ।

କିନ୍ତୁ ପରମ୍ପରାନୁଯାୟୀ ବାମାଗ୍ରଗୀ ରକ୍ତପାୟୀ ପିଶାଚମାନେ ଓ ହୀନ ସ୍ୱାର୍ଥାନ୍ୱେଷୀ ପଦବାଚ୍ୟ ଗୃଧ୍ର ମାଂସାଶୀମାନେ ଶବ୍ଦଗୁଡ଼ିକର ଗୂଢ଼ ରହସ୍ୟକୁ ଭେଦ କରି ନପାରି ଇନ୍ଦ୍ରିୟ ଲାଳସା ନିମିତ୍ତ ମହାନ୍ ବେଦ ନାମରେ ଓ ଜଗଜ୍ଜନନୀଙ୍କ ପୂଜାର୍ଚ୍ଚନାରେ ନୃଶଂସ ପଶୁବଳି ପ୍ରବର୍ତ୍ତନ କରି ଧର୍ମ ଜଗତରେ ବିଭୀଷିକା ସୃଷ୍ଟି କରିଛନ୍ତି । ଶବ୍ଦର ଅର୍ଥ ରହସ୍ୟ ନିଗୂଢ଼ । ତେଣୁ 'ଆର୍ଯ୍ୟ' ଭାଷାରେ ଶବ୍ଦକୁ 'ବ୍ରହ୍ମ' ଭାବେ ସମ୍ବୋଧନ କରାଯାଇଛି ।

ଗୀତଗୋବିନ୍ଦର ରଚୟିତା ଜୟଦେବ, ଦଶଅବତାର ସ୍ତବରେ ଭଗବାନ ବୁଦ୍ଧଙ୍କ ବିଷୟରେ କହିଛନ୍ତି :–

'ନିନ୍ଦସି ଯଜ୍ଞ ବିଧେରହହ ଶ୍ରୁତିଜାତଂ,
ସଦୟ ହୃଦୟ ଦର୍ଶିତ ପଶୁଘାତଂ
କେଶବ ଧୃତ ବୁଦ୍ଧ ଶରୀର
ଜୟ ଜଗଦୀଶ ହରେ ।'

ସ୍ୱୟଂ ବ୍ୟାସଦେବ ମହାଭାରତରେ ଉଲ୍ଲେଖ କରିଛନ୍ତି :–

'ସୁରା, ମତ୍ସ୍ୟାନ୍, ମଧୁ, ମାଂସ ମାସବଂକୃଶରୌଦନମ୍ ।
ଧୂର୍ତ୍ତୈପ୍ରବର୍ତ୍ତିତଂ ହ୍ୟେତ ନୈତଦ୍ ବେଦେଷୁ କଳ୍ପିତମ ।'

ଅର୍ଥାତ୍ ସୁରା, ମାଂସାଦି ସେବନ ସ୍ୱାର୍ଥବାଦୀମାନଙ୍କ ପ୍ରବର୍ତ୍ତିତ ଦୁଷ୍କର୍ମ, ଯାହାର ବିଧିବିଧାନ ବେଦରେ ଉଲ୍ଲେଖ କରାଯାଇ ନାହିଁ ।

'ଜୀବ ମାରି ଜୀବ ପୋଷେ ସେ ଜୀବ ବୈକୁଣ୍ଠେ ବସେ ।'

ସାଧାରଣ ଲୋକେ ଅନ୍ୟ ଜୀବର ମାଂସ ଖାଇ ସ୍ୱର୍ଗପ୍ରାପ୍ତି ହୁ... ବୋଲି ବୁଝୁଥିବା ବେଳେ ସ୍ୱାର୍ଥାନ୍ୱେଷୀ ମାଂସାଶୀମାନେ ଏ... ଅର୍ଥକୁ ମାଂସ ଭକ୍ଷଣାର୍ଥରେ ବ୍ୟବହାର କରୁଛନ୍ତି । କିନ୍ତୁ ଏଠାରେ ଜୀବମାରିବା ଅର୍ଥ ପ୍ରାଣୀବଧ ନୁହେଁ । ପାର୍ଥିବ ଲୋଭ, ମୋହ, ମାୟାକୁ ମାରିବା ବା ସେଥିରୁ ନିବୃତ୍ତ ହୋଇ ଜୀବ ପୋଷିବା ଅର୍ଥାତ୍ ନିଜ ଭିତରେ ଥିବା ସୋଽହଂ ବା ପରମାତ୍ମାଙ୍କ ସତ୍ତ୍ୱକୁ ସ୍ୱର୍ଗମୁଖୀ କରାଇବା ଅର୍ଥରେ ବ୍ୟବହୃତ ।

'ବଳି'ର ଅର୍ଥ କ'ଣ ? ଏକାର୍ଥରେ ବଳି ଶବ୍ଦର ଅର୍ଥ ଭାଗ ବା ଅଂଶ ଏବଂ ଅନ୍ୟାର୍ଥରେ ବଳି ଶବ୍ଦର ଅର୍ଥ ଉତ୍ସର୍ଗ । ଶାସ୍ତ୍ରମାନଙ୍କ ମତାନୁଯାୟୀ ବଳି ବିନା କୌଣସି କାର୍ଯ୍ୟ ସାଧିତ ହୋଇପାରି ନାହିଁ । ଭଗବାନଙ୍କୁ ପାଇବାକୁ ହେଲେ ବଳି ଅନିବାର୍ଯ୍ୟ ।

ବୈଷ୍ଣବ ଓ ବୌଦ୍ଧ ପରମ୍ପରାକୁ ବାଦ୍ ଦେଇ ଶିବ, ଜୈନ ଓ ସୌରମାନେ ମଧ୍ୟ ନିଜ ନିଜ ମନ୍ଦିରରେ ପୁଷ୍ପ, ଚନ୍ଦନ ଓ ଅର୍ଘ୍ୟ ପ୍ରଭୃତି ବଳି ଦେଇଥାନ୍ତି । ପ୍ରେମ ରୂପକ ଭକ୍ତିକୁ ମଧ୍ୟ ବଳି ଦେଇଥାନ୍ତି । ସୃଷ୍ଟିର ସକଳ ସାଧନା ଭିତରେ ରହିଛି 'ବଳି ବା ଉତ୍ସର୍ଗ' । ନିଜକୁ ବଳି ଦେବା ହିଁ ଉତ୍ସର୍ଗ । ଆତ୍ମବଳୀ ବ୍ୟତୀତ ଜ୍ଞାନ ଶକ୍ତି ଓ ପ୍ରେମ ମିଳିବା ଅସମ୍ଭବ । ପୌରାଣିକ ଯୁଗରେ ଅସୁରମାନେ ମଧ୍ୟ ନିଜ ଦେହକୁ କାଟି ବଳି ଦେଉଥିଲେ । କ୍ରମଶଃ ନିଜ ପରିବର୍ତ୍ତେ ନିଜର ପ୍ରିୟଜନକୁ ଉତ୍ସର୍ଗ କରିବା ପ୍ରଥା ପ୍ରଚଳିତ ହେଲା । କର୍ଣ୍ଣ ନିଜର ପ୍ରିୟ ପୁତ୍ର ବୃଷକେତୁକୁ ଉତ୍ସର୍ଗ କରିବା ବେଳେ ହରିଶ୍ଚନ୍ଦ୍ର ଏକମାତ୍ର ପୁତ୍ର ରୋହିତାଶ୍ୱକୁ ଉତ୍ସର୍ଗ କରିଥିଲେ ।

ଜନକଲ୍ୟାଣ ନିମନ୍ତେ ଆତ୍ମୋତ୍ସର୍ଗ ବୌଦ୍ଧ ଧର୍ମରେ ପ୍ରାଧାନ୍ୟ ବିସ୍ତାର କରିଛି । ସାଧକ ବୋଧିସତ୍ତ୍ୱ ହୋଇ ବୁଦ୍ଧତ୍ୱ ପାଇବା ପରେ ଜଗତର କଲ୍ୟାଣ ପାଇଁ ଚିର ଦୁଃଖ ବରଣ କରି ମାନବ ସମାଜକୁ ଆଲୋକ ପ୍ରଦାନ କଲେ ।

ବେଦ ଓ ପୁରାଣମାନଙ୍କରେ 'ପଶୁ ଯଜ୍ଞ' ବିଷୟ ଉଲ୍ଲେଖ ଅଛି । କିନ୍ତୁ ଦୁର୍ଭାଗ୍ୟ ଯେ କେତେକ ବାମମାର୍ଗୀ ତାନ୍ତ୍ରିକ ଓ ହୀନସ୍ୱାର୍ଥାନ୍ୱେଷୀ ପିଶାଚ ପଶୁ ଯଜ୍ଞରେ ପଶୁବଳି ଦେଉଥାନ୍ତି । କିନ୍ତୁ ବେଦର ବିଭିନ୍ନ ସ୍ଥାନରେ ଅଗ୍ନି, ବାୟୁ ଓ ସୂର୍ଯ୍ୟାଦିଙ୍କୁ ପଶୁ ଭାବେ ଅଭିହିତ କରାଯାଇଛି ।

ଯଜୁର୍ବେଦର (୨୩, ୧୭) ଶ୍ଳୋକରେ 'ଅଗ୍ନିଃ ପଶୁରାସୀତ.....' 'ବାୟୁ ପଶୁରାସୀତ......' ଭାବେ ଉଲ୍ଲେଖ କରାଯାଇଛି । ଅଗ୍ନି, ବାୟୁ ଓ ସୂର୍ଯ୍ୟଙ୍କର ପ୍ରତ୍ୟକ୍ଷ ସମ୍ବନ୍ଧ ନଥିବା ଯଜ୍ଞକୁ 'ଅପଶୁ ଯଜ୍ଞ' ଓ ସମ୍ବନ୍ଧ ଥିବା ଯଜ୍ଞକୁ 'ପଶୁ ଯଜ୍ଞ' ଭାବେ ଅଭିହିତ କରାଯାଇଛି ।

ବ୍ରାହ୍ମଣ୍ୟ ଗ୍ରନ୍ଥ ବିରି ଓ ଯବ ପିଣ୍ଡର ବିଭିନ୍ନ ଅବସ୍ଥାକୁ ଲୋମ, ତ୍ୱକ, ମାଂସ, ଅସ୍ଥି ଓ ମଜ୍ଜା ରୂପେ ବର୍ଣ୍ଣନା କରିଥିବା ବେଳେ ବିରି ଓ ଯବରେ ପଞ୍ଚପଶୁଙ୍କ ଶ୍ରୀବିଦ୍ୟମାନ ବୋଲି ଉଲ୍ଲେଖ ରହିଛି । ବାମ ମାର୍ଗୀମାନେ ପଶୁବଦ୍ଧର ତାତ୍ପର୍ଯ୍ୟ ନବୁଝି ପଞ୍ଚପଶୁ ଅର୍ଥରେ ଗୋବର, ଅଶ୍ୱ, ମହିଷ, ଛେଳି ଓ ମେଣ୍ଢା ଏପରିକି ମନୁଷ୍ୟଙ୍କୁ ମଧ୍ୟ ବଧ କରି ନରମେଧ, ଗୋମେଧ, ଅଶ୍ୱମେଧ, ଅଜମେଧ ଆଦି

# ଶକ୍ତି ପୂଜା ଓ ପଶୁ ବଳି

* ଶ୍ରୀ ମନୋରଞ୍ଜନ ପାଣିଗ୍ରାହୀ

ଭାରତର ଆଧ୍ୟାତ୍ମିକ ପରମ୍ପରା ଯୁଗଯୁଗ ଧରି ମାତୃ ଉପାସନାର ଶ୍ରେଷ୍ଠ ଓ ଗୁରୁତ୍ୱ ଉପଲବ୍ଧି କରି ଆସିଛି । ଭାରତୀୟ ସଂସ୍କୃତି ଓ ଦର୍ଶନ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ଏହି 'ଶକ୍ତି' ଦର୍ଶନ ଦ୍ୱାରା ହିଁ ନିୟନ୍ତ୍ରିତ । ବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି, ପାଳନ ଓ ସଂହାର ଆଦି ଏହି ଶକ୍ତି ଉପରେ ହିଁ ନିର୍ଭର କରେ । ହିନ୍ଦୁ ଧର୍ମଧାରାର ପଞ୍ଚୋପାସନା ମଧ୍ୟରେ ଶକ୍ତି ଉପାସନାର ବୈଶିଷ୍ଟ୍ୟ ସର୍ବୋତ ଭାବେ ସ୍ୱୀକୃତ । ଶକ୍ତିଂ କରୋତି ବ୍ରହ୍ମାଣ୍ଡଂ ସର୍ବେ ପାଲୟତେ ଖିଳଂ ।' ବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି ଓ ପାଳନକର୍ତ୍ତ୍ରୀ ସେ ।

ସମଗ୍ର ମାନବ ଜାତିର ଇତିହାସ ପର୍ଯ୍ୟାଲୋଚନା କଲେ ଜଣାଯାଏ, ମାତୃ ଦେବତାର ପୂଜା ଅତି ପ୍ରାଚୀନ ଓ ବ୍ୟାପକ । ଶକ୍ତି ହିଁ ବିଶ୍ୱଜଗତରେ ପ୍ରମୁଖ ସମର୍କୀୟା । 'ପୂଜା' ଶବ୍ଦ ମଧ୍ୟ ମହନୀୟ ଓ ପବିତ୍ର । ପୂଜା ଓ ଉପାସନାରେ ପବିତ୍ର ଭାବନା ନିହିତ ଥିବା ବେଳେ ଜଗଜ୍ଜନନୀଙ୍କ ପୂଜା ବିଧାନରେ ଜୀବ ହତ୍ୟା ଭଳି ହିଂସାତ୍ମକ ପ୍ରଥା ପ୍ରଚଳିତ କାହିଁକି ? ଏ ପ୍ରଶ୍ନ ଆଜି ଆଧୁନିକ ଶିକ୍ଷିତ ମନୁଷ୍ୟ ମନରେ ଘୋର ଆଲୋଡ଼ନ ସୃଷ୍ଟି କରିଛି ।

'ଅହିଂସା ହିଁ ପରମ ଧର୍ମ ।' ତଥାପି ଧର୍ମ ନାମରେ ପଶୁହତ୍ୟା, ମନୁଷ୍ୟର ହିଂସ୍ରତା ଓ ବର୍ବରତାକୁ ସ୍ପଷ୍ଟ ରୂପେ ସୂଚନା ଦେଉଛି । ସୃଷ୍ଟିର ପ୍ରତ୍ୟେକ ଜୀବ ଯେତେବେଳେ ମହାମାୟୀଙ୍କ ସନ୍ତାନ ତେବେ ମାଆ କେବେ ନିଜ ସନ୍ତାନର ରକ୍ତ ପାନ କରି ଆତ୍ମସନ୍ତୋଷ ଲାଭ କରିପାରିବ କି ।?

ଯାଗ, ଯଜ୍ଞ ମଧ୍ୟରେ ପଶୁବଳି ପ୍ରଥା ଆବହମାନକାଳରୁ ପ୍ରଚଳିତ ହୋଇଆସୁଛି । ପଶୁବଳି ସପକ୍ଷରେ ଅସଂଖ୍ୟ ଯୁକ୍ତି ଶାସ୍ତ୍ର ପୁରାଣମାନଙ୍କରେ ଉଲ୍ଲେଖ କରାଯାଇଥିବା ବେଳେ ବିପକ୍ଷରେ ମଧ୍ୟ ଅସଂଖ୍ୟ ଯୁକ୍ତି ଉପସ୍ଥାପିତ ହୋଇଛି । ମହାଭାରତ ଯୁଗ ପରେ ଶୁଦ୍ଧ ବୈଦିକ ପଣ୍ଡିତମାନଙ୍କର ଅଭାବ, ବାମମାର୍ଗୀ ତାନ୍ତ୍ରିକମାନଙ୍କର ପ୍ରାଧାନ୍ୟ ବୃଦ୍ଧି ଏବଂ ମହୀଧର, ସାୟଣାଚାର୍ଯ୍ୟଙ୍କ ଭଳି ମଧ୍ୟକାଳୀନ କର୍ମକାଣ୍ଡୀ ବୈଦିକ ଭାଷ୍ୟକାରୀମାନେ ବୈଦିକ ଶବ୍ଦର ବିକୃତ ଅର୍ଥ କରିବା ସଙ୍ଗେ ସଙ୍ଗେ ଘୃଣ୍ୟ ଜାତିବାଦକୁ ପ୍ରଶ୍ରୟ ଦେଇଛନ୍ତି । ବାମାଚାରୀମାନେ ପଶୁବଳିକୁ ପ୍ରାଧାନ୍ୟ ଦେଉଥିବାବେଳେ ଦକ୍ଷିଣାଚାରୀ ବୈଷ୍ଣବମାନେ ପାଣିକଖାରୁକୁ ବଳି ଦିଅନ୍ତି ।ବେଦରେ ପଶୁବଳି ପ୍ରଥାକୁ ସମ୍ପୂର୍ଣ୍ଣଭାବେ ନିନ୍ଦା କରାଯାଇଥିବା ବେଳେ ଶୈବ, ବୈଷ୍ଣବ, ଜୈନ ଓ ବୌଦ୍ଧ ଧର୍ମାବଲମ୍ବୀମାନେ ମଧ୍ୟ ଏହାର ବିରୁଦ୍ଧାଚରଣ କରିଛନ୍ତି ।

ବେଦରେ ପଶୁପାଳନ ଓ ପଶୁମାନଙ୍କ ସୁରକ୍ଷା ପାଇଁ ଅନେକ ସ୍ଥଳରେ ଉଲ୍ଲେଖ କରାଯାଇଥିବା ବେଳେ ପଶୁବଳିର କେତେକ ସମର୍ଥକ ତାନ୍ତ୍ରିକ ହିଂସ୍ରପନ୍ଥୀମାନେ ପଶୁବଳିକୁ ଦୈନିକ ଯଜ୍ଞାନୁଷ୍ଠାନର ଅଙ୍ଗ ବୋଲି ଘୋଷଣା କରିବା ସଙ୍ଗେ ସଙ୍ଗେ ବୈଦିକ ଯଜ୍ଞ କର୍ମରେ ପଶୁବଳିକୁ 'ବୈଦିକ ହିଂସା ହିଂସା ନ ଭବତି' ବୋଲି ଉଲ୍ଲେଖ କରିଛନ୍ତି ।

ଅନ୍ୟତଃ, ସୃଷ୍ଟିରେ ମାଂସ ଭକ୍ଷଣର ଆବଶ୍ୟକତା ଯୁଗଯୁଗ ଧରି ପ୍ରଚଳିତ । ଯେତେ ଧର୍ମବାଣୀ ପ୍ରକାଶ ପାଇଲେ ବି ସମାଜରୁ ଏହା ଲୋପ ପାଇ ନାହିଁ କି ଲୋପ ପାଇବା ସମ୍ଭବ ନୁହେଁ । ଶରୀର ରକ୍ଷା ପାଇଁ ମାଂସ ଭୋଜନ ଅପରିହାର୍ଯ୍ୟ । ସେତେବେଳେ ଜୀବହତ୍ୟା ପରିତ୍ୟାଜ୍ୟ ସମ୍ଭବ କି ? ଏହା ଯଦି ସମ୍ଭବ ନୁହେଁ, ତା' ହେଲେ ପୂଜାବେଦୀରେ ନୈବେଦ୍ୟ ଭାବେ ତା'ଙ୍କୁ ସମର୍ପଣ କରି ପ୍ରସାଦ ରୂପେ ସେବନ କରିବାରେ ଆପତ୍ତି ବା କ'ଣ ?

କେତେକ କର୍ମକାଣ୍ଡୀ ବୈଦିକ ଭାଷ୍ୟକାରୀମାନେ ସଂକୀର୍ଣ୍ଣ ହୀନସ୍ୱାର୍ଥ ଚରିତାର୍ଥ ପାଇଁ ପଶୁବଳିର ପ୍ରାଧାନ୍ୟକୁ ସ୍ୱୀକାର କରିଛନ୍ତି ।

'ଔଷଧଃ, ପଶବୋ ବୃକ୍ଷାସ୍ତିର୍ଯ୍ୟଂଚ ପକ୍ଷିଣସ୍ତଥା । ଯଜ୍ଞାର୍ଥଂ ନିଧନଂ ପ୍ରାପ୍ତାଂ ପ୍ରାପ୍ନୁବନ୍ତ୍ୟୁତ୍ସ୍ରିତାଂ ଗତିନ୍ ।' ଅର୍ଥାତ୍ ଔଷଧ, ପଶୁ, ବୃକ୍ଷ, ପ୍ରାଣୀ ତଥା ପକ୍ଷୀମାନଙ୍କୁ ଯଜ୍ଞ ପାଇଁ ହତ୍ୟାକଲେ ସେମାନେ ସ୍ୱର୍ଗ ପ୍ରାପ୍ତି ହୁଅନ୍ତି । ସୁତରାଂ ପଶୁହତ୍ୟା ଦୋଷାବହ ନୁହେଁ । ତେଣୁ ପଶୁମାନଙ୍କୁ ହତ୍ୟା କରି ସେମାନଙ୍କୁ ସ୍ୱର୍ଗପ୍ରାପ୍ତି କରାଇବା ପାଇଁ ବାମାଚାରୀଗଣ ଗୁରୁତ୍ୱ ଆରୋପ କରିଛନ୍ତି ।

ଯଜ୍ଞରେ ବଳି ପ୍ରଥା ଦ୍ୱାରା ଜୀବର ସ୍ୱର୍ଗପ୍ରାପ୍ତି ହେବା ଭଳି ଭ୍ରାନ୍ତିମୀକୁ ମହର୍ଷି 'ଚାର୍ବାକ୍' ତାଚ୍ଛଲ୍ୟ କରି ସେହି କର୍ମକାଣ୍ଡୀ ବୈଦିକ ଭାଷ୍ୟକାରୀମାନଙ୍କୁ ପ୍ରଶ୍ନ କରିଛନ୍ତି ।

'ପଶୁଶ୍ଚେନ୍ନିହତଃ ସ୍ୱର୍ଗଂ ଜ୍ୟୋତିଷ୍ଟୋମେ ଗମିଷ୍ୟତି
ସ୍ୱପିତା ଯଜମାନେନ ତତ୍ର କସ୍ମାତ୍ ନହିଂସ୍ୟତେ ?'

# ଅହମୀକା ଶୋଷ

* ଅଧ୍ୟାପକ ବିକ୍ରମ କେଶରୀ ବର୍ମା

(୧)

ରକତ ନଦୀରେ ଶବ ଓଲଟାଇ
କିସ ପୁଣି ଖୋଜୁଅଛୁ ମାନୀ ଦୁର୍ଯ୍ୟୋଧନ
କିଏ ତୁମ ଭାଇ ବନ୍ଧୁ କିଏ ପ୍ରତିବେଶୀ
କିଏ ହୋଇପାରେ ତୁମ କୁମର ଲକ୍ଷ୍ମଣ ।

(୨)

ଆଜି ବି ରକତ ନଦୀ ବହୁଅଛି
କ୍ଷମତାର ଅହଂକାର ଚରିତାର୍ଥ ପାଇଁ
ଧର୍ମ ନାମେ ଦେଉ ବଳି
ପୂଜା ପୀଠ ପାଇଁ କଳି
ସବୁଠାରୁ ଶସ୍ତା ଆଜି ମଣିଷ ରକତ
ଲଢ଼ାଇ ତ ସରେ ନାହିଁ
କେତେ ସୂର୍ଯ୍ୟ ହୋଇଲେଣି ଅସ୍ତ ।

(୩)

ଇତିହାସ ପୁରାଣରେ
ମିଳିବନି ସଠିକ ହିସାବ
ରଖିଥିଲେ ହିସାବ ରଖିଥିବେ
ସୂର୍ଯ୍ୟ ଚନ୍ଦ୍ର ତାରା
ଅମୁହାଁ ଦେଉଳେ ପଶି
ଆମେ ଯେତେ ହୋଇଅଛୁ
ହଣା ହଣି ପରା ।

(୪)

ଅସ୍ତ୍ରକୁ ଫୋପାଡ଼ି ଏବେ "ରଣ ଛାଡ଼'
ହେବା ବନ୍ଧୁ ଆସ
ଶୁଖିଯିବ ରକ୍ତ ନଦୀ ଉତ୍ସ
ମେଣ୍ଟିଯିବ ଆମ ଅହମୀକା ଶୋଷ ।

---

ଅଧକ୍ଷ, ରାଜ୍ୟ ବିହନ ନିଗମ ।

ହିଂସ୍ର ଯଜ୍ଞ ପ୍ରଚଳନ କରିଥିଲେ । କିନ୍ତୁ ବ୍ରାହ୍ମଣ୍ୟ ଗ୍ରନ୍ଥ ସ୍ମୃତି ଶାସ୍ତ୍ର ତନ୍ତ୍ର ଶାସ୍ତ୍ରମାନଙ୍କ ଯଜ୍ଞ ପ୍ରକରଣରେ 'ଗୌ' ଅର୍ଥ ଗୋ–ଘୃତକୁ ଅଶ୍ୱ, ଅର୍ଥରେ 'ତଣ୍ଡୁଳକଣା', 'ଅଜ' ଅର୍ଥରେ ପୁରୁଣା ଧାନ, 'ଧେନୁ' ଅର୍ଥରେ ଧାନ ଓ 'ମାଂସ' ଅର୍ଥରେ ଫଳର ମାଂସାଳ ଅଂଶକୁ ଗ୍ରହଣ କରିବା ପାଇଁ ସ୍ପଷ୍ଟ ଭାବେ ନିର୍ଦ୍ଦେଶ ଦିଆଯାଇଛି ।

ମହର୍ଷି 'ଗାର୍ଗାୟଣ' ଗୋମେଧ, ଅଶ୍ୱମେଧ, ଅଜମେଧ ଭଳି ବୈଦିକ ଶବ୍ଦଗୁଡ଼ିକର ତାତ୍ତ୍ୱିକ ଅର୍ଥ ବିଶ୍ଳେଷଣ କରିଛନ୍ତି । 'ଗୋ' ଅର୍ଥ ବାଣୀ 'ମେଧ' ଅର୍ଥ 'ବୁଦ୍ଧି' । ତେଣୁ ଗୋ–ମେଧ ଅର୍ଥ ବାଣୀକୁ ବୁଦ୍ଧି ସହ ସଂଯୋଗ କରିବା । ଠିକ୍ ସେଭଳି 'ଅଶ୍ୱ' ଅର୍ଥ ଜ୍ଞାନ 'ମେଧ' ଅର୍ଥ ଦାନ ତେଣୁ ଅଶ୍ୱମେଧ ଅର୍ଥକୁ ଜ୍ଞାନ ଦାନ ଭାବେ ସେ ଉଲ୍ଲେଖ କରିଛନ୍ତି । ତେଣୁ ପ୍ରାଚୀନ ରାଜାମାନେ ଅଶ୍ୱମେଧ ଯଜ୍ଞ କହିଲେ ରାଜ୍ୟରେ ବ୍ୟାପକ ଶିକ୍ଷାର ବିକାଶ ଘଟାଉଥିଲେ । ଆତ୍ମସ୍ୱରୂପୀ ପରମାତ୍ମା ନର ବା ମନୁଷ୍ୟ ହେତୁ ସବୁ କିଛିକୁ ଈଶ୍ୱରଙ୍କ ଆତ୍ମସ୍ୱବୋଧ କରାଇବା ହିଁ ନରମେଧ । 'ଅଜ' ଅର୍ଥ 'ଅମର' । 'ମେଧ' ଅର୍ଥ ଜ୍ଞାନ । ତେଣୁ ଅମରତତ୍ତ୍ୱର ଜ୍ଞାନକୁ ହିଁ ଅଜମେଧ ଭାବେ ଗାର୍ଗାୟଣ ଉଲ୍ଲେଖ କରିଛନ୍ତି ।

ପ୍ରକୃତ ପକ୍ଷେ ଦେଖିବାକୁ ଗଲେ ଆତ୍ମୋତ୍ସର୍ଗ ହିଁ ବଳି । ମହାଭାରତ ଅନୁଶାସନ ପର୍ବରେ ବର୍ଣ୍ଣିତ ଚ୍ୟବନଙ୍କଠାରୁ ଆରମ୍ଭ କରି ବନ ପର୍ବର ଶିବ ଉପାଖ୍ୟାନ, ଭାଗବତର ବର୍ଣ୍ଣିତ ରନ୍ତିଦେବ ଓ ପ୍ରହ୍ଲାଦ ଜଗତରେ ଦୁଃଖମୋଚନ ପାଇଁ ନିଜର ଆତ୍ମୋତ୍ସର୍ଗ କରିଛନ୍ତି ।

ପଶୁବଳି ପରି ଘୃଣ୍ୟ କଳଙ୍କିତ ଓ ପୈଶାଚିକ ପ୍ରଥା ବିରୁଦ୍ଧରେ ପ୍ରତିବାଦର ସ୍ୱର ପ୍ରଥମେ ଭାରତରେ ହିଁ ଉତ୍ତୋଳିତ ହୋଇଥିଲା । ଏହି ଘୃଣ୍ୟ ପ୍ରଥାକୁ ପ୍ରଥମେ ବୁଦ୍ଧଦେବ ହିଁ ବିରୋଧ କରିଥିଲେ ।

ଦୟାନନ୍ଦ, ବିବେକାନନ୍ଦ ଓ ଗାନ୍ଧିଜୀଙ୍କ ଭଳି ଅସଂଖ୍ୟ ତପସ୍ୱୀ ଓ ସମାଜ ସଂସ୍କାରକ ଜୀବହତ୍ୟା ଭଳି ଘୃଣ୍ୟ ପ୍ରଥାକୁ ଘୋର ବିରୋଧ କରି ଆସିଛନ୍ତି । ଅସଂଖ୍ୟ ବିଦେଶୀ, ବିଦ୍ୱାନ ଓ ଧର୍ମାଚାର୍ଯ୍ୟମାନେ ଏହି କଳଙ୍କିତ ପରମ୍ପରାକୁ କଟୁ ସମାଲୋଚନା କରିଛନ୍ତି ।

ବିଶ୍ୱର ଅସଂଖ୍ୟ ବିଦ୍ୱାନ, ତପସ୍ୱୀ, ଧର୍ମାଚାର୍ଯ୍ୟ ଓ ସମାଜ ସଂସ୍କାରକମାନଙ୍କ କଟୁ କଟାକ୍ଷପାତ ସତ୍ତ୍ୱେ ଏବେ ବି ଅସଂଖ୍ୟ ଶକ୍ତିପୀଠରେ ଜୀବହତ୍ୟାର ବିଭୀଷିକା ଚାଲିଛି । ପୁରୀ ମନ୍ଦିର ଭଳି ପବିତ୍ର ସ୍ଥାନରେ ମହାଷ୍ଟମୀ ଦିନ ବିମଳାଙ୍କୁ ରକ୍ତାର୍ଘ୍ୟ ପ୍ରଦାନ କରାଯାଉଛି । ବର୍ତ୍ତମାନ ବି ବହୁ ଶାକ୍ତ ପୀଠମାନଙ୍କରେ ଛାଗ ଓ ମହିଷ ବଳି ପ୍ରଚଳିତ । ଶୈବ, ବୈଷ୍ଣବ, ବୌଦ୍ଧ ଓ ଜୈନ ଧର୍ମାବଲମ୍ବୀମାନେ ମଧ୍ୟ ପଶୁବଳିର ଘୃଣ୍ୟ ପ୍ରଥାକୁ ବିରୁଦ୍ଧାଚରଣ କରି କହିଛନ୍ତି :– ବଳିଦାନ ଯଦି ଦେବାକୁ ଚାହଁ ତାହାହେଲେ ଅନ୍ତରର ରିପୁମାନଙ୍କୁ ବଳିଦିଅ । ଛାଗ, ମହିଷ ପ୍ରଭୃତିକୁ ବଳି ଦେଇ କ'ଣ ବା ପୁଣ୍ୟ ଅର୍ଜନ କରିବ ? ମନରେ ପ୍ରଶ୍ନ ଉଠେ ଏ ପ୍ରଥା ଆଉ କେତେଦିନ ଚାଲିବ ?

ଭାରତୀୟ ଶାକ୍ତ ପରମ୍ପରା ଧର୍ମଜଗତରେ ଏକ ପ୍ରମୁଖ ସ୍ଥାନ ଗ୍ରହଣ କରିଛି । ବେଦ, ଉପନିଷଦ, ରାମାୟଣ, ମହାଭାରତ, ପୁରାଣାଦି ଧର୍ମଗ୍ରନ୍ଥମାନଙ୍କରେ ଦେବୀଙ୍କ ମହାତ୍ମ୍ୟ ପ୍ରସିଦ୍ଧି ଅର୍ଜନ କରିଥିବା ବେଳେ କେତେକ ହୀନ ସ୍ୱାର୍ଥାନ୍ୱେଷୀ ରକ୍ତପାୟୀ ଗୃଧ୍ର ମାଂସାଶୀମାନେ ଶକ୍ତି ପୂଜାରେ ପଶୁବଳି ପ୍ରବର୍ତ୍ତନ କରି, ଧର୍ମ ଜଗତରେ ପଶୁବଳିର ଯେଉଁ ବିଭୀଷିକା ସୃଷ୍ଟି କରିଚାଲିଛନ୍ତି, ସେହି ଆସୁରୀ ଶକ୍ତିର ଶୋଷଣ, କଷଣ ଓ ପେଷଣରୁ ମାତୃଶକ୍ତି ଦୁର୍ଗା ମାନବ ସମାଜକୁ ଉଦ୍ଧାର କରନ୍ତୁ, ଏହା ହିଁ ସଙ୍କଟ ତାରିଣୀ ମା' ଦୁର୍ଗାଙ୍କ ନିକଟରେ ବିନମ୍ର ପ୍ରାର୍ଥନା ।

ଗ୍ରାଃ/ପୋଃ ବେଲଗୁଣ୍ଠା,
ଜି: ଗଞ୍ଜାମ–୭୬୧୧୧୧ ।



ସଚିବାଳୟଠାରେ ଅନୁଷ୍ଠିତ ଏକ ସାମ୍ବାଦିକ ସମ୍ମିଳନୀରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ପଛୁଆବର୍ଗଙ୍କ ପାଇଁ ସ୍ଥାନ ସଂରକ୍ଷଣ ଓ ଏକ କମିଶନ ଗଠନ ସଂପର୍କରେ ଘୋଷଣା କରୁଛନ୍ତି ।

# ବନ୍ୟପ୍ରାଣୀ ସଂରକ୍ଷଣ – ଆମର କର୍ତ୍ତବ୍ୟ

* ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାନ୍ତି

ପ୍ରାଣୀ ଓ ଉଦ୍ଭିଦ ପରସ୍ପର ସୃଷ୍ଟିର ସହାୟକ । ମନୁଷ୍ୟ ସୃଷ୍ଟିର ଶ୍ରେଷ୍ଠ ପ୍ରାଣୀ ସତ କିନ୍ତୁ ମନୁଷ୍ୟ, ଜୀବଜନ୍ତୁ ଓ ଜଙ୍ଗଲ ସମ୍ପଦକୁ ନେଇ ଜୀବମଣ୍ଡଳର ପରିକଳ୍ପନା । ମାନବ ସମାଜର ସ୍ଥିତି ଓ ପରିପୋଷଣ ଉଦ୍ଭିଦ ଓ ଜୀବଜଗତ ଉପରେ ନିର୍ଭରଶୀଳ ।

କେଉଁ ଆବହମାନ କାଳରୁ ପ୍ରକୃତି ଓ ପରିବେଶ ସହିତ ମନୁଷ୍ୟର ମଧୁର ସମ୍ପର୍କ ରହି ଆସିଛି । ସୁଦୂର ଅତୀତର ପ୍ରାକୃତିକ ପରିବେଶ ଓ ଜୀବଜନ୍ତୁଙ୍କ ପ୍ରତି ସଚେତନତା ଆଜିର ସଭ୍ୟ ସମାଜର ଅବଦାନ ନୁହେଁ । ଯୁଗ ଯୁଗ ଧରି ଆମେ କେତେକ ନିର୍ଦ୍ଦିଷ୍ଟ ବୃକ୍ଷକୁ ପୂଜା କରିଆସୁଛୁ ଓ ବୃକ୍ଷ ରୋପଣ ଏକ ମହତ କାର୍ଯ୍ୟ ବୋଲି ଗ୍ରହଣ କରିଛେ । ସେହିପରି ଆମ ସାମାଜିକ ଚଳଣିର ଜୀବଜନ୍ତୁମାନଙ୍କୁ ସମ୍ମାନ ଦେବା ଉଦ୍ଦେଶ୍ୟରେ ଠାକୁର ଠାକୁରାଣୀଙ୍କ ବାହାନ ରୂପେ ଗ୍ରହଣ କରାଯାଇଛି । ଉଦାହରଣ ସ୍ୱରୂପ, କାର୍ତ୍ତୀକେଶ୍ୱଙ୍କର ମୟୂର, ଶିବଙ୍କର ବୃଷଭ, ଦୁର୍ଗାଙ୍କର ସିଂହ, ସରସ୍ୱତୀଙ୍କର ହଂସ, ଗଣେଶଙ୍କର ମୂଷା, ଇନ୍ଦ୍ରଙ୍କର ଐରାବତ ହସ୍ତୀ ଓ ନାରାୟଣଙ୍କର ପକ୍ଷୀରାଜ ଗରୁଡ଼ । ଏହାଛଡ଼ା ସିଂହ, ମେଷ, ବୃଷ, କର୍କଟ ଇତ୍ୟାଦି ପ୍ରାଣୀମାନଙ୍କୁ ରାଶି ଚକ୍ରରେ ସ୍ଥାନ ଦିଆଯାଇଛି ।

ଆମର କାବ୍ୟ, କବିତା, ନାଟକ, ଗଳ୍ପ ଓ ସାହିତ୍ୟ, ପଶୁ ପକ୍ଷୀଙ୍କ ଚରିତ୍ରକୁ ନେଇ ସମୃଦ୍ଧ ହୋଇଛି । ସିଂହର ଠାଣି, ଗଜ ଏବଂ ହଂସର ଗତି, ବକର ଏକାଗ୍ରତା, କୁରଙ୍ଗର ଦୃଷ୍ଟି ଆମର କାବ୍ୟ କବିତାରେ ଉପମାର ବସ୍ତୁ ହୋଇ ରହିଛି । ବିଷ୍ଣୁ ଶର୍ମା କୃତ ହିତୋପଦେଶ ଓ ପଞ୍ଚତନ୍ତ୍ରରେ ପଶୁପକ୍ଷୀମାନଙ୍କ ମାଧ୍ୟମରେ ମଣିଷ ସମାଜକୁ ଧର୍ମନୀତି ଓ ରାଜନୀତି ଶିକ୍ଷା ଦିଆଯାଇଛି । ଓଡ଼ିଆ ମହାଭାରତରେ ଆଦିକବି ସାରଳା ଦାସ ନବଗୁଞ୍ଜର ନାମରେ ଏକ ବିଚିତ୍ର ଜୀବର ପରିକଳ୍ପନା କରିଛନ୍ତି । ଯେଉଁ ନଅଟି ପ୍ରାଣୀର ଅଙ୍ଗ ବିଶେଷକୁ ନେଇ ନବଗୁଞ୍ଜର କଳ୍ପନା କରାଯାଇଛି ସେଗୁଡ଼ିକ ହେଲା ମୟୂରର ମୁଣ୍ଡ, ବାଘ ଦେହର ଗାର, ଘୋଡ଼ାର ଶରୀର ଓ ଗୋଡ଼, ମଣିଷର ହାତ, ହାତୀର ଗୋଡ଼, ବାଘର ଗୋଡ଼, ବୃଷଭର କୁଜ, ଓ ସାପର ଲାଞ୍ଜ, ଏହି ନଅଟି ପ୍ରାଣୀର ଶରୀରର ଅଂଶ ବିଶେଷ ହିଁ ବିଭିନ୍ନ ପ୍ରକାର ଗୁଣର ନିଦର୍ଶନ, ଯଥା:–ମୟୂର ସୌନ୍ଦର୍ଯ୍ୟର ପ୍ରତିକ, ଘୋଡ଼ା ଶକ୍ତିର ପ୍ରତିକ, ବୃଷଭ ଧର୍ମର ପ୍ରତିକ, ହାତୀ ସ୍ଥିରତାର ପ୍ରତିକ, ସାପ, ବିଲେଇ ଓ ବ୍ୟାଘ୍ର ହିଂସ୍ରତାର ପ୍ରତିକ, ସର୍ବୋପରି ମଣିଷ କେତେକ ଓ ବୁଦ୍ଧିର ପ୍ରତିକ ।ଭଗବାନ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ଏପରି ଏକ ଅଦ୍ଭୁତ ଜୀବ ରୂପେ ବନ ମଧ୍ୟରେ ଦର୍ଶନ ଦେଇଥିଲେ । ସମସ୍ତ ପ୍ରାଣୀକୁ ନେଇ ଯେ ଏ ସୃଷ୍ଟି, ଏଥିରୁ ସୂଚନା ମିଳେ ।

ମଣିଷ ସମାଜ ଭଳି ବୃକ୍ଷଲତା ଓ ଜୀବଜନ୍ତୁ ପ୍ରକୃତିରେ ଭାରସାମ୍ୟ ରକ୍ଷାକରି ବଞ୍ଚି ରହନ୍ତି । ସୃଷ୍ଟିର ପ୍ରତ୍ୟେକ ଜୀବକୁ ସୀମିତ ଜୀବନ କାଳ ମଧ୍ୟରେ କିଛିନା କିଛି କର୍ମ କରିବାକୁ ପଡ଼ିଥାଏ । ମାଟି ଭିତରେ ଭରପୂର ରହିଥିବା ଅସଂଖ୍ୟ ଜୀବାଣୁ ପଚନ ପ୍ରକ୍ରିୟା ଦ୍ୱାରା ମୃତ ଜୈବିକ ବସ୍ତୁଗୁଡ଼ିକରୁ ଯବକ୍ଷାରଜାନକୁ ନେଇ ମାଟିରେ ମିଶାଇ ମାଟିର ଉର୍ବର ଶକ୍ତି ବୃଦ୍ଧି କରନ୍ତି ଓ ଆଉ କେତେକ ଉଦ୍ଭିଦ ଜଗତରେ ବିଭିନ୍ନ ଅଂଶକୁ ବ୍ୟବହାର କରି ଅଙ୍ଗାରକାମ୍ଳ, ଜଳ ଓ ତାପ ସୃଷ୍ଟି କରିଥାନ୍ତି । ପ୍ରାଣୀମାନେ ଉଦ୍ଭିଦମାନଙ୍କର ପରାଗ ସଙ୍ଗମ କ୍ରିୟାରେ ସାହାଯ୍ୟ କରିଥାନ୍ତି ।

ପ୍ରକୃତିର ବିଧିବିଧାନ ଅତି ବିଚିତ୍ର । ପ୍ରକୃତିର ଭାରସାମ୍ୟ ରକ୍ଷା କରିବା ପାଇଁ ଗୋଟିଏ ଜୀବ ବା ପ୍ରାଣୀ ଅନ୍ୟ ଗୋଟିକର ଖାଦ୍ୟ ହୋଇଥାଏ । ଶିକାରୀ ପ୍ରାଣୀମାନେ ନିଜର ଖାଦ୍ୟୋପଯୋଗୀ ପ୍ରାଣୀମାନଙ୍କୁ ଶିକାର କରି ଜୀବନ ଧାରଣ କରିବା ସଙ୍ଗେ ସଙ୍ଗେ ପ୍ରକୃତିର ସମତା ରକ୍ଷା କରିଥାନ୍ତି । ପ୍ରାକୃତିକ ପରିବେଶ ପରିଷ୍କାର ରଖିବାରେ ବନ୍ୟପ୍ରାଣୀମାନେ ସହାୟକ ହୁଅନ୍ତି । ଉଦାହରଣ ସ୍ୱରୂପ ହୁଣ୍ଡାଳ, ଗଧିଆ, ବିଲୁଆ, କୁକୁର, ଶାଗୁଣା, କୁଆ ଓ ଚିଲ ଇତ୍ୟାଦି ପ୍ରକୃତିର ଝାଡ଼ୁଦାର ରୂପେ କାମ କରିଥାନ୍ତି ।

ଦିନ ଥିଲା ଆମ ଦେଶ ବଣ ଅରଣ୍ୟରେ ଭରପୂର ଥିଲା । ଆମର ଅରଣ୍ୟାରଣ୍ୟ, ନୈମିଷାରଣ୍ୟ, ଏପରିକି ଦଣ୍ଡକାରଣ୍ୟ, ପ୍ରତ୍ୟେକ ଜୀବଜନ୍ତୁଙ୍କୁ ଦେଇଥିଲା ଆଶ୍ରୟ । ତାର ଫଳ ସ୍ୱରୂପ ଅଗଣିତ ମୁନିଋଷିମାନଙ୍କ ପ୍ରଭାବରେ ଜନ୍ମ ନେଇଥିଲା ସତ୍ୟ ଅହିଂସାର ଦର୍ଶନ ।

ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଉନ୍ନତ ଜୀବନର ମାନ ବୃଦ୍ଧି ସହିତ ଜନସଂଖ୍ୟା ଦ୍ରୁତ ଗତିରେ ବୃଦ୍ଧି ପାଇଲା । କ୍ରମ ବର୍ଦ୍ଧିଷ୍ଣୁ ଜନସଂଖ୍ୟାକୁ ଖାଦ୍ୟ ଓ ବାସସ୍ଥାନ ଯୋଗାଇବା ପାଇଁ ଅଧିକରୁ ଅଧିକ ଜଙ୍ଗଲ କଟାଯାଇ ଚାଷ ଜମିରେ ପରିଣତ କରାଗଲା । ଶିଳ୍ପର ଅଭିବୃଦ୍ଧି ପାଇଁ ଜଙ୍ଗଲ କଟାଯାଇ କଳ କାରଖାନା

# ଅକାଳ ବୋଧନ

* ବନପ୍ରଭା ପରିଡ଼ା

ଅଷ୍ଟୋତ୍ତର ଶତ ନୀଳପଦ୍ମ
ଫୁଟିବାର ଅବକାଶ ନାହିଁ
ଏଠି ପ୍ରଦୂଷିତ ନଦୀ–ପୁଷ୍କରିଣୀ,
ସ୍ୱାର୍ଥ ପାଇଁ ଭାଇ ରକ୍ତେ
ଭାଇ ହାତ ଲାଲ ହୁଏ
ରକ୍ତରେ ଲୁହୁ ଲୁହୁ
ସବୁଜ ଧରଣୀ
ବିଶ୍ୱାସୀ ମଣିଷଟିଏ
ବନ୍ଧୁ–ଭୃତ୍ୟ–ଶୁଭାକାଂକ୍ଷୀ ଭାବେ
ଏଠି–ସେଠି–କେଉଁଠି ମିଳେନି

ଜନନୀ !
କେଉଁ ଅର୍ଘ୍ୟ ଦେଇ ଆଜି
ଗାଇବି ମୁଁ ତୋ'ର ଆବାହନୀ ?
ନିତି ନିତି ଯେତେ ସବୁ
ଅନ୍ୟାୟ–ଅତ୍ୟାଚାର
ବିଭତ୍ସ ଘଟଣା
ଦେଖି ଦେଖି ଅନ୍ଧ ମୁଁ
ନୟନ ମୋ ଜ୍ୟୋତି ହୀନ
ପଦ୍ମର ପବିତ୍ରତା ନାହିଁ ଯେଣୁ
ତୋ'ପାଦରେ ଭେଟି ଦେବା ପାଇଁ
ଏ ମନରେ ପ୍ରତ୍ୟୟ ଆସେନା ।
ବିଲ୍ୱପତ୍ର ଶ୍ରୀଫଳରେ
ସନ୍ତୁଷ୍ଟ ହୁଅନ୍ତୁ ଅବା
ଅପନ୍ତରା ପଡ଼ିଆରେ
ଏଣେତ ମୁଁ ବୃକ୍ଷଟିଏ ରୋପିବାକୁ
ଆରମ୍ଭ କରିଛି
ଫଳ–ପୁଷ୍ପ–ପଲ୍ଲବରେ
ପୂର୍ଣ୍ଣ ହେଲେ,
ତୋ' ଅର୍ଚ୍ଚନା କରିବାର
ବାସନା ରଖିଛି ।

ତଥାପି ଜନନୀ !
ତୁ' ଯେଣୁ ପ୍ରକୃତି ସ୍ୱରୂପା
ସୃଜନର ପ୍ରଥମ ଓଁକାର
ସୃଷ୍ଟିର ଏ ଧ୍ୱଂସକାଳେ
ପ୍ରତିକ୍ଷାର ନାହିଁ ଅବସର ।
ଏଠି ଏବେ ରାବଣର ମୁଣ୍ଡ ବଢ଼େ
ଭୁଜ ବଢ଼େ, ବିଶ୍ୱର ବିଭୀଷିକା ବଢ଼େ
ଦେବଅଂଶୀ ମଣିଷର ହୃଦୟରେ
ପରସ୍ତ ପରସ୍ତ ମାୟା,
ଶରତର ଆକାଶରେ
ଶ୍ରାବଣର ଲୁହବିନ୍ଦୁ ଝରେ ।
ପ୍ରହରଣ ଲୋଡ଼ା ନାହିଁ
ଅବତର ଜନନୀ ଗୋ
ପ୍ରତିଟି ହୃଦୟେ ।
ଦୟା–କ୍ଷମା–ଶାନ୍ତି–ଶକ୍ତି
ସମତା ରୂପରେ
ଅକାଳ ବୋଧନ ମା'ଗୋ
ସାର୍ଥକ ହେଉ ପୁଣି ଆରଥରେ
ପୁଣ୍ୟ ଏ ଭାରତ ଭୂଇଁରେ ॥

ସା:–ଶାଣ୍ଡିଲଣା, ପୋ:–କଳପଡ଼ା,
ଭାୟା–ଢେଙ୍କାନାଳ, ଜି:–କଟକ ।

# ଗ୍ରାମାଞ୍ଚଳ ପ୍ରଗତିରେ ରାଜ୍ୟ ସରକାର

* ଶ୍ରୀ ଯଜ୍ଞସେନ ରାଉତ

ଭାରତ ଏକ ଗ୍ରାମବହୁଳ ଦେଶ । ଏହାର ଅଧିକାଂଶ ଲୋକ ଗ୍ରାମାଞ୍ଚଳରେ ବାସ କରନ୍ତି । କୃଷି ଏମାନଙ୍କର ପ୍ରଧାନ ବ୍ୟବସାୟ । ବିଶେଷ କରି ଓଡ଼ିଶାବାସୀ କୃଷି ଉପରେ ହିଁ ନିର୍ଭର କରି ଚଳନ୍ତି । ଏପରିକି ସହରରେ ଚାକିରି କରୁଥିବା ଲୋକଙ୍କର ମଧ୍ୟ ନିଜସ୍ୱ ଜମି ବାଡ଼ି କିଛି ଥିବ । ଗାଁରେ ଘର ଖଣ୍ଡେ ଥିବ । ଏପରି ଲୋକଙ୍କ ସଂଖ୍ୟା ବୋଧ ହୁଏ ଶହେରୁ ନବେ ଭାଗ ହେବ । ତେଣୁ ଦେଶର ଉନ୍ନତି କରିବାକୁ ହେଲେ ଗ୍ରାମାଞ୍ଚଳ ପ୍ରତି ଅଧିକ ଗୁରୁତ୍ୱ ଦେବା ବାଞ୍ଛନୀୟ । ରାଜ୍ୟ ସରକାର ଶାସନ ଦାୟିତ୍ୱ ହାତକୁ ନେବା ପରଠାରୁ ଗ୍ରାମାଞ୍ଚଳର ଉନ୍ନତି ନିମନ୍ତେ ଅଧିକ ଯତ୍ନବାନ ହୋଇଛନ୍ତି । ଗ୍ରାମାଞ୍ଚଳର ପ୍ରଗତି ପାଇଁ ସ୍ୱତନ୍ତ୍ର ଅର୍ଥର ବ୍ୟବସ୍ଥା କରିଛନ୍ତି । କ୍ଷୁଦ୍ର ଜଳସେଚନ ପ୍ରକଳ୍ପଠାରୁ ଉଠା ଜଳସେଚନ ପ୍ରକଳ୍ପ ନିର୍ମାଣ, ଗ୍ରାମାଞ୍ଚଳରେ ରାସ୍ତାଘାଟ ନିର୍ମାଣ, ପାନୀୟ ଜଳ ଯୋଗାଣ ତଥା ଗ୍ରାମବାସୀଙ୍କୁ ସ୍ୱାସ୍ଥ୍ୟ ସେବାର ସୁବିଧା ଯୋଗାଇ ଦେବା ଉପରେ ଅଧିକ ଗୁରୁତ୍ୱ ଆରୋପ କରିଛନ୍ତି । ରାଜ୍ୟ ଗ୍ରାମ୍ୟ ଉନ୍ନୟନ ବିଭାଗ ଉପରେ ଏହି ସବୁ କାର୍ଯ୍ୟ ତୁଲାଇବା ଦାୟିତ୍ୱ ନ୍ୟସ୍ତ କରାଯାଇଛି ।

ଦେଶରେ ଥିବା ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଆମ ଓଡ଼ିଶାର ଜଳ ସମ୍ପଦ ଯଥେଷ୍ଟ ଅଧିକ । ଆମ ରାଜ୍ୟରେ ଜଳସେଚନର ବିସ୍ତୃତ ସୁବିଧା ରହିଛି । ସେହି ଜଳ ସମ୍ପଦକୁ ଉପଯୁକ୍ତ ଭାବେ ବିନିଯୋଗ କରିବା ଆମର ଦାୟିତ୍ୱ । ଭୂତଳ ଜଳ ସମ୍ପଦର ସନ୍ଧାନ ନେଇ ତା'ର ସଦୁପଯୋଗ କଲେ କୃଷିର ଉତ୍ପାଦନ ବୃଦ୍ଧି ପାଇବ । ଓଡ଼ିଶାର ଗ୍ରାମାଞ୍ଚଳ ଉନ୍ନତି ନିମନ୍ତେ ରାଜ୍ୟ ସରକାର "ଗ୍ରାମ୍ୟ ଉନ୍ନୟନ ନୀତି" ପ୍ରଣୟନ କରିଛନ୍ତି । ଏହି ନୀତିରେ ସରକାର ରାଜ୍ୟରେ ଥିବା ଗ୍ରାମାଞ୍ଚଳରେ ଜଳସେଚନର ସୁବିଧା ରାସ୍ତାଘାଟର ନିର୍ମାଣ, ପାନୀୟ ଜଳ ଯୋଗାଣ, ଗ୍ରାମର ପରିମଳ ବ୍ୟବସ୍ଥାକୁ ଅଧିକ ତ୍ୱରାନ୍ୱିତ କରିବା ତଥା ଗ୍ରାମବାସୀଙ୍କ ସ୍ୱାସ୍ଥ୍ୟରକ୍ଷା ପ୍ରତି ଅଧିକ ଦୃଷ୍ଟି ଦେବା ସହିତ ଗ୍ରାମାଞ୍ଚଳକୁ ବିଦ୍ୟୁତ୍ ଯୋଗାଇ ଦେବା ଓ ନିରକ୍ଷର ଗ୍ରାମବାସୀଙ୍କୁ ସାକ୍ଷର କରିବା ଇତ୍ୟାଦି କାର୍ଯ୍ୟ ଏହାର ଅନ୍ତର୍ଭୁକ୍ତ ।

## ପାନୀୟ ଜଳ ଯୋଗାଣ

ସହରାଞ୍ଚଳ ପରି ଗ୍ରାମାଞ୍ଚଳକୁ ପାନୀୟ ଜଳ ଯୋଗାଇ ଦେବା ନିମନ୍ତେ ସରକାର ଅଧିକ ଗୁରୁତ୍ୱ ଦେଇଛନ୍ତି । ଗତ ୧୯୯୦ ମସିହା ପର୍ଯ୍ୟନ୍ତ ୯୮ ଗୋଟି ଗ୍ରାମ୍ୟ ପାଇପ୍ ଜଳ କାର୍ଯ୍ୟକ୍ରମ ସମ୍ପୂର୍ଣ୍ଣ ହୋଇଥିଲା । ମାତ୍ର ୧୯୯୦ ମସିହା ମାର୍ଚ୍ଚ ମାସଠାରୁ ୧୯୯୨ ମାର୍ଚ୍ଚ ମାସ ପର୍ଯ୍ୟନ୍ତ ୧୨୮ଟି ପାଇପ୍ ଜଳ ଯୋଗାଣ କାର୍ଯ୍ୟକ୍ରମ ମାଧ୍ୟମରେ ଭିନ୍ନ ଭିନ୍ନ ଜିଲ୍ଲାକୁ ୩୬୬ ଗୋଟି ଗ୍ରାମ ଓ ତା' ସହିତ ସଂଲଗ୍ନ ଥିବା ପଡ଼ାକୁ ପାଇପ୍ ଯୋଗେ ବିଶୁଦ୍ଧ ପାନୀୟ ଜଳ ଯୋଗାଇ ଦେବାର କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ବଲାଙ୍ଗୀର ଜିଲ୍ଲାର ସିନ୍ଧେଇକେଲା, କେନ୍ଦୁଝର ଜିଲ୍ଲାର କେଶଦୁରାପାଳ, କଟକ ଜିଲ୍ଲାର ରଘୁନାଥପୁର ଓ ଓକାଗୁଣି, ଗଞ୍ଜାମ ଜିଲ୍ଲାର ଟିଗିରିପଡ଼ା ଶାସନଠାରେ ପାଇପ୍ ଜଳ ଯୋଗାଇ ଦିଆଯାଇଥିବାରୁ ସେ ସବୁ ସ୍ଥାନରେ ନିୟମିତ ଭାବେ ଦୈନିକ ମୁଣ୍ଡପିଛା ୪୦ ଲିଟର ହିସାବରେ ପାନୀୟ ଜଳ ଲୋକମାନେ ପାଇପାରୁଛନ୍ତି । ଏହା ବ୍ୟତୀତ ୧୯୯୩-୯୪ ଆର୍ଥିକ ବର୍ଷ ପାଇଁ ୧୦୦ରୁ ଊର୍ଦ୍ଧ୍ୱ ନୂତନ ଗ୍ରାମ୍ୟ ପାଇପ୍ ଜଳ ଯୋଗାଇ ଦେବା ନିମନ୍ତେ ଅର୍ଥର ବ୍ୟବସ୍ଥା ହୋଇଛି । ଆଦିବାସୀ ବହୁଳ ଗ୍ରାମମାନଙ୍କରେ ମଧ୍ୟ ପାନୀୟ ଜଳ ଯୋଗାଣ ବ୍ୟବସ୍ଥା ହୋଇଛି । ଫୁଲବାଣୀ, କୋରାପୁଟ, ରାୟଗଡ଼ା, ନବରଙ୍ଗପୁର, ମାଲକାନଗିରି ଇତ୍ୟାଦି ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ବିଶୁଦ୍ଧ ପାନୀୟ ଜଳର ବ୍ୟବସ୍ଥା କରାଯାଇଛି । ଏଥି ନିମନ୍ତେ ସରକାର ବହୁ ପଦକ୍ଷେପ ଗ୍ରହଣ କରିଛନ୍ତି । ଗ୍ରାମର ଭୌଗୋଳିକ ସ୍ଥିତି, ଜନସଂଖ୍ୟା ଓ ଭିନ୍ନ ଭିନ୍ନ ଗ୍ରାମ ପାଇଁ ଆବଶ୍ୟକୀୟ ଉତ୍ସ ନିର୍ଦ୍ଧାରଣ କରି ଏହି ସବୁ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିଛନ୍ତି । ଜଳକ୍ଳିଷ୍ଟ ଗ୍ରାମକୁ ଜନସଂଖ୍ୟା ଭିତ୍ତିରେ ପାନୀୟ ଜଳ ଯୋଗାଇ ଦିଆଯାଇଛି । ପାହାଡ଼ିଆ ଅଞ୍ଚଳର ଉଚ୍ଚ ପାହାଡ଼ ଉପରେ ଅବସ୍ଥିତ ଗ୍ରାମମାନଙ୍କୁ ଝରଣାରୁ ପାଇପ୍ ଯୋଗେ ପାଣି ଆଣି ବିଶୁଦ୍ଧ ପାନୀୟ ଜଳ ଯୋଗାଇ ଦିଆଯାଇଛି । ବହୁକାଳ ଧରି ଉପେକ୍ଷିତ ଭାଇ ଭଉଣୀମାନେ ବିଶୁଦ୍ଧ ପାନୀୟ ଜଳର ସ୍ୱାଦ ଏବେ ଅନୁଭବ କରୁଛନ୍ତି । ଏହା ବ୍ୟତୀତ ରାଜ୍ୟ ସରକାର ହରିଜନ ଆଦିବାସୀ ବହୁଳ ପଡ଼ାମାନଙ୍କୁ ଚିହ୍ନଟ କରି ଶାସନର ଦୁଇ ବର୍ଷ ମଧ୍ୟରେ ୮୬୭ଟି ହରିଜନ-ଆଦିବାସୀ ପଡ଼ାକୁ ପାନୀୟ ଜଳ ଯୋଗାଇ ଦେଇଛନ୍ତି । ଏହା ବ୍ୟତୀତ ୧୪୪ଟି ପଡ଼ାକୁ ମାର୍ଚ୍ଚ ୧୯୯୩ ସୁଦ୍ଧା ପାନୀୟ ଜଳ ଯୋଗାଇ ଦିଆଯାଇଛି । ସମୁଦାୟ ୧,୦୦୦ଟି ପଡ଼ାକୁ ପାନୀୟ ଜଳ ଯୋଗାଇ ଦିଆଯାଇଛି ।

ଜଳଭଣ୍ଡାର ଓ ଜଳସେଚନ ପ୍ରକଳ୍ପ ଆଦି ନିର୍ମାଣ କରାଗଲା । ଫଳରେ ଜଙ୍ଗଲ କ୍ଷୟ ସଙ୍ଗେ ସଙ୍ଗେ ସେହି ସବୁ ଜଙ୍ଗଲରୁ ବନ୍ୟ ଜନ୍ତୁ ମଧ୍ୟ ଲୋପ ପାଇଗଲେ । ଯେଉଁ ବନ୍ୟ ଜନ୍ତୁମାନଙ୍କୁ ମନୁଷ୍ୟ ସେମାନଙ୍କର ପ୍ରିୟ କରିବା ପାଇଁ ଆଦିମ ଯୁଗରୁ ଉଦ୍ୟମ ହୋଇ ଆସିଥିଲା । ସଭ୍ୟ ମନୁଷ୍ୟ ସଭ୍ୟତାର ବିସ୍ତାର ନାମରେ ସେ ସବୁ ଧ୍ୱଂସ କଲା । ଭାରତରେ ଇଂରେଜ ଶାସନର ଅଭ୍ୟୁଦୟ ସହିତ ଶିଳ୍ପ ବିକାଶ ଫଳରେ ଜଙ୍ଗଲ କଟାଯାଇ ସହର ବଜାର ଓ କଳକାରଖାନା ବସିଲା । ବନ୍ୟ ଜନ୍ତୁମାନଙ୍କର ଆବାସ ସ୍ଥଳୀ କ୍ରମଶଃ ସଙ୍କୁଚିତ ହେବା ଫଳରେ ବନ୍ୟଜନ୍ତୁ ଆସ୍ତେ ଆସ୍ତେ କମିଗଲେ । ତତ୍କାଳୀନ ଦେଶୀୟ ଗଡ଼ଜାତର ରାଜା ମହାରାଜାମାନେ ଇଂରେଜ ଶାସକମାନଙ୍କୁ ଖୁସି କରିବା ପାଇଁ ନିଜ ରାଜ୍ୟକୁ ନିମନ୍ତ୍ରଣ କରି ଶିକାର କରିବାରେ ବ୍ୟସ୍ତ ରହୁଥିଲେ । ଅଧିକ ପରିମାଣରେ ବାଘ, ସିଂହ, ଗଣ୍ଡଜ, ହରିଣ ଇତ୍ୟାଦି ଶିକାର କରି ସେମାନଙ୍କ ମୁଣ୍ଡ ଓ ଛାଲକୁ ବୈଠକଖାନାମାନଙ୍କରେ ସଜେଇ ରଖିବା ଏକ ସୌଖିନ୍ ବିଳାସ ଥିଲା ।

ଉଦ୍ଭିଦ ଜଗତ ଓ ଜୀବ ଜଗତ ପରସ୍ପର ପରିପୂରକ । ଏଥିରୁ ଗୋଟିଏ ଧ୍ୱଂସ ପାଇଲେ ଅନ୍ୟଟି ଆପେ ଆପେ ଧ୍ୱଂସ ହୋଇଯିବ । ତେଣୁ ଏହି ପରିସ୍ଥିତିରେ ବନ୍ୟଜନ୍ତୁ ସଂରକ୍ଷଣ କରିବା ପାଇଁ ସେମାନଙ୍କର ଆବାସ ସ୍ଥାନ ଜଙ୍ଗଲର ସୁରକ୍ଷା କରିବା ନିତାନ୍ତ ଆବଶ୍ୟକ ହୋଇ ପଡ଼ିଲା ।

ବନ୍ୟପ୍ରାଣୀଙ୍କର ସୁରକ୍ଷା ପାଇଁ ୧୯୭୨ ମସିହାରେ ବନ୍ୟପ୍ରାଣୀ ସୁରକ୍ଷା ଆଇନ୍ ପ୍ରଣୟନ କରାଗଲା । ପ୍ରଧାନମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଭାରତୀୟ ବନ୍ୟପ୍ରାଣୀ ପରିଷଦ ଓ ରାଜ୍ୟସ୍ତରରେ ଜଙ୍ଗଲ ବିଭାଗ ମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ପରାମର୍ଶଦାତା ପରିଷଦ ଗଠନ କରାଯାଇଛି । ୧୯୮୮ ମସିହାରେ "ଜାତୀୟ ବନ ନୀତି" ପ୍ରଣୟନ କରାଯାଇ ପରିବେଶର ଭାରସାମ୍ୟ ରକ୍ଷା କରିବା ପାଇଁ ବନ୍ୟ ଉଦ୍ଭିଦ ଓ ପ୍ରାଣୀଙ୍କ ସୁରକ୍ଷାକୁ ପ୍ରାଥମିକତା ଦିଆଯାଇଛି । ବନ୍ୟପ୍ରାଣୀ ଆଇନ୍‌ରେ ୧୯୯୧ ମସିହାରେ ବନ୍ୟପ୍ରାଣୀ ସୁରକ୍ଷା ପାଇଁ କେତେକ ପରିବର୍ତ୍ତନ କରାଯାଇ ଏହାକୁ ଆହୁରି କଡ଼ାକଡ଼ି କରାଯାଇଛି । ବନ୍ୟପ୍ରାଣୀ ସୁରକ୍ଷା ପାଇଁ ଗ୍ରହଣ କରାଯାଇଥିବା ମୁଖ୍ୟ କାର୍ଯ୍ୟକ୍ରମ ସବୁ ହେଲା :–

(୧) ନିଶ୍ଚିତାଞ୍ଚଳ, ଜାତୀୟ ଉଦ୍ୟାନ, ଅଭୟାରଣ୍ୟ, ଜୀବମଣ୍ଡଳ ସଂରକ୍ଷଣ ଅଞ୍ଚଳ ସ୍ଥାପନ କରିବା ।

(୨) ସଂରକ୍ଷିତ ଅଞ୍ଚଳମାନଙ୍କରେ କ୍ଷୟପ୍ରାପ୍ତ ବନରାଜି ଓ ବନ୍ୟ ଜୀବଙ୍କର ପୁନରୁଦ୍ଧାର କରିବା ।

(୩) ଲୁପ୍ତ ପ୍ରାୟ ଅବସ୍ଥାରେ ଥିବା ବିଭିନ୍ନ ପଶୁପକ୍ଷୀଙ୍କୁ ଉପଯୁକ୍ତ ସୁରକ୍ଷା ଦେଇ ସ୍ୱ ସ୍ୱ ବାସସ୍ଥଳୀରେ ଥଇଥାନ କରିବା ।

(୪) ସୁରକ୍ଷିତ ଅଞ୍ଚଳ ଛଡ଼ା ଅନ୍ୟତ୍ର ଯେତେ ବନ୍ୟଜନ୍ତୁ ଅଛନ୍ତି ସେମାନଙ୍କ ପାଇଁ ପର୍ଯ୍ୟାପ୍ତ ସୁରକ୍ଷା ଯୋଗାଇ ଦେବା ।

(୫) ପ୍ରାଣୀ ଉଦ୍ୟାନମାନଙ୍କରେ ଲୁପ୍ତ ପ୍ରାୟ ପଶୁପକ୍ଷୀମାନଙ୍କର ପ୍ରଜନନ କରାଇ ତାଙ୍କ ବଂଶ ବୃଦ୍ଧି ସୁରକ୍ଷାରେ ସାହାଯ୍ୟ କରିବା ।

ରାଜ୍ୟ ସରକାର ବନ୍ୟପ୍ରାଣୀ ସଂରକ୍ଷଣ ଉଦ୍ଦେଶ୍ୟରେ କେତେକ ବଳିଷ୍ଠ ପଦକ୍ଷେପ ଗ୍ରହଣ କରିଛନ୍ତି । ବର୍ତ୍ତମାନ ଆମ ରାଜ୍ୟରେ ବିଭିନ୍ନ ପ୍ରକାର ଜଙ୍ଗଲ ଅଞ୍ଚଳକୁ ନେଇ ୨ଟି (ଦୁଇଟି) ଜାତୀୟ ଉଦ୍ୟାନ, ୧୬ଟି (ଷୋଳଟି) ଅଭୟାରଣ୍ୟ ଓ ଗୋଟିଏ ବ୍ୟାଘ୍ର ପ୍ରକଳ୍ପ ପ୍ରତିଷ୍ଠା କରାଯାଇଛି । ଏହା ଭିତରେ ୬୫ ଜାତିର ସ୍ତନ୍ୟପାୟୀ, ୪୭୬ ଜାତିର ପକ୍ଷୀ ଏବଂ ୮୪ ଜାତିର ସରୀସୃପ ଥିବା ଜଣାଯାଏ । ଏହି ଅଞ୍ଚଳମାନଙ୍କର ମୋଟ ଆୟତନ ପ୍ରାୟ ୬ ହଜାର ବର୍ଗ କିଲୋମିଟର ଯାହା କି ରାଜ୍ୟର ଭୂଭାଗର ପ୍ରାୟ ୪ ଶତାଂଶ ଅଟେ । ଏଥିରୁ କେତେଗୁଡ଼ିଏ ଅଭୟାରଣ୍ୟ କୌଣସି ଏକ ନିର୍ଦ୍ଦିଷ୍ଟ ପଶୁପକ୍ଷୀଙ୍କର ସଂରକ୍ଷଣ ପାଇଁ ଉଦ୍ଦିଷ୍ଟ । ଉଦାହରଣ ସ୍ୱରୂପ ଚିଲିକା ହ୍ରଦର ନଳବଣ ପକ୍ଷୀମାନଙ୍କ ପାଇଁ, ଭୁବନେଶ୍ୱର ନିକଟସ୍ଥ ଚନ୍ଦକା ଜଙ୍ଗଲ ହସ୍ତୀମାନଙ୍କ ପାଇଁ ଉଦ୍ଦିଷ୍ଟ ଅଭୟାରଣ୍ୟ ରୂପେ ଘୋଷିତ ହୋଇଛି । ଭିତର କନିକା ଜାତୀୟ ଉଦ୍ୟାନ ଭିତରେ ରାଜନଗର ନିକଟସ୍ଥ ସମୁଦ୍ର କୂଳ ସାମୁଦ୍ରିକ କଇଁଛଙ୍କ ପାଇଁ ଅଭୟାରଣ୍ୟ ରୂପେ ଘୋଷିତ ହୋଇଛି । ଭିତର କନିକା ଜାତୀୟ ଉଦ୍ୟାନ ଭିତରେ ରାଜନଗର ନିକଟସ୍ଥ ସମୁଦ୍ର କୂଳ ସାମୁଦ୍ରିକ କଇଁଛଙ୍କ ପାଇଁ ଅଭୟାରଣ୍ୟ ରୂପେ ଘୋଷିତ ହୋଇଛି । ଶୀତ ଦିନେ ହଜାର ହଜାର ସଂଖ୍ୟକ ସାମୁଦ୍ରିକ କଇଁଛ ଏଠାକୁ ଆସି ନିକଟସ୍ଥ ବାଲିରେ ଅଣ୍ଡା ଦେଇଥାନ୍ତି । ଏହି ସମୟରେ ସାମୁଦ୍ରିକ କଇଁଛ ଓ ସେମାନଙ୍କ ଅଣ୍ଡାକୁ ସୁରକ୍ଷିତ ରଖିବା ନିମନ୍ତେ ଉପକୂଳ ରକ୍ଷୀ ବାହିନୀକୁ ନିୟୋଜିତ କରାଯାଇଥାଏ । ସେହିପରି ବ୍ୟାଘ୍ରମାନଙ୍କ ସଂରକ୍ଷଣ ଓ ବଂଶ ବୃଦ୍ଧି ପାଇଁ ବ୍ୟାଘ୍ର ପ୍ରକଳ୍ପ ସୃଷ୍ଟି କରାଯାଇଛି ।

ଅଭୟାରଣ୍ୟମାନଙ୍କରେ ଗଛ କାଟିବା ଓ ଶିକାର କରିବା ସମ୍ପୂର୍ଣ୍ଣ ଭାବେ ନିଷେଧ କରାଯିବା ସଙ୍ଗେ ସଙ୍ଗେ ସର୍ବସାଧାରଣଙ୍କ ଯାତାୟତ ମଧ୍ୟ ନିୟନ୍ତ୍ରଣ କରା ଯାଇଥାଏ, ଫଳରେ ଜଙ୍ଗଲ ସୁରକ୍ଷିତ ରହିବା ସଙ୍ଗେ ସଙ୍ଗେ ଜୀବଜନ୍ତୁମାନେ ନିର୍ଭୟରେ ଓ ନିର୍ବିଘ୍ନରେ ବିଚରଣ କରିଥାନ୍ତି ଓ ପ୍ରାକୃତିକ ପରିବେଶ ମଧ୍ୟରେ ସେମାନଙ୍କର ସ୍ୱାଭାବିକ ବଂଶ ବୃଦ୍ଧି ଘଟିଥାଏ ।

ଅଭୟାରଣ୍ୟ ଭିତରେ ଜୀବଜନ୍ତୁମାନଙ୍କୁ ସୁରକ୍ଷା ଦେବା ସହିତ ସେମାନଙ୍କ ପାଇଁ ସ୍ଥାନେ ସ୍ଥାନେ ଜଳାଶୟ ଖୋଲାଯାଇଛି, ଯେପରି କି ଖରାଦିନେ ଜୀବଜନ୍ତୁମାନେ ପିଇବାକୁ ପାଣି ପାଇପାରିବେ । ଅଭୟାରଣ୍ୟ ମଧ୍ୟରେ ଶିକାର କରିବା କିମ୍ବା ଜୀବଜନ୍ତୁଙ୍କୁ ମାରିବା ସମ୍ପୂର୍ଣ୍ଣ ଦୋଷାବହ । ଅଭୟାରଣ୍ୟ ସୀମାର ୧୦ କି.ମି. ଭିତରେ କୌଣସି ବନ୍ଧୁକ ଲାଇସେନସ୍ ନଦେବା ପାଇଁ ନିୟମ କରାଯାଇଛି । ଅଭୟାରଣ୍ୟ ଭିତରେ କୌଣସି ଜନ୍ତୁ ମରିଗଲେ ସେ ଖବର ବନ୍ୟଜନ୍ତୁ ସଂରକ୍ଷକଙ୍କୁ ଜଣାଇବା ସେଠାରେ ନିୟମାନୁମୋଦିତ ଭାବେ ବାସ କରୁଥିବା ଅଧିବାସୀଙ୍କର କର୍ତ୍ତବ୍ୟ ।

ଗତ କେତେ ବର୍ଷ ଭିତରେ ଜୀବଜନ୍ତୁଙ୍କ ସଂଖ୍ୟା ଆଶାତୀତ ଭାବେ ବୃଦ୍ଧି ପାଇଛି । ବର୍ତ୍ତମାନ ୪୩ଟି ମହାବଳ ବାଘ, ୨୬୯ଟି କଲରା ପତରିଆ ବାଘ, ୨,୦୦୦ରୁ ଊର୍ଦ୍ଧ୍ୱ ହାତୀ, ୧,୨୦୦ରୁ ଅଧିକ ବଉଳା କୁମ୍ଭୀର ଥିବା ଜଣାପଡ଼ିଛି । ବର୍ଷକୁ ହାରାହାରି ୨ ଲକ୍ଷ ସାମୁଦ୍ରିକ କଇଁଛ ଗହୀର ମଥା ଉପକୂଳକୁ ଅଣ୍ଡା ଦେବାକୁ ଆସୁଛନ୍ତି ।

ସରକାରୀ ଉଦ୍ୟମ ଯେତେ ବ୍ୟାପକ ହେଲେ ଓ ନିୟମ କାନୁନ୍ ଯେତେ ପ୍ରଣୟନ ହେଲେ ବି ଜନସାଧାରଣଙ୍କ ସହଯୋଗ ବିନା କୌଣସି ଯୋଜନା ଫଳପ୍ରଦ ହେବ ନାହିଁ । ଜନସାଧାରଣଙ୍କ ମଧ୍ୟରେ ଚେତନା ଓ ଜାଗରଣ ସୃଷ୍ଟି ନହେଲେ ବନ ବା ବନ୍ୟଜନ୍ତୁ ସଂରକ୍ଷଣ ସମ୍ଭବ ହେବ ନାହିଁ । ତେଣୁ ଓଡ଼ିଶାର ଅଦ୍ୱିତୀୟ ଓ ଅମୂଲ୍ୟ ବନ୍ୟଜନ୍ତୁ ସମ୍ପଦର ସୁରକ୍ଷା କରିବା ଓ ସୁରକ୍ଷା କାର୍ଯ୍ୟରେ ସରକାରଙ୍କୁ ସାହାଯ୍ୟ ଓ ସହଯୋଗ କରିବା ଆମର ପ୍ରଧାନ କର୍ତ୍ତବ୍ୟ ।

କ୍ୱାର୍ଟର ନଂ ଛି ଏ-୨୦/୨,
ୟୁନିଟ୍-୨, ଭୁବନେଶ୍ୱର ।

# ଶାନ୍ତି ଓ ସଦିଚ୍ଛାର ପ୍ରତୀକ ଲାଲବାହାଦୁର

* ଶ୍ରୀ କୃଷ୍ଣଚନ୍ଦ୍ର ସୁଆର

ଜାତିର ଯେଉଁ ପୂଜ୍ୟ ନେତାମାନଙ୍କର ଅବିଶ୍ରାନ୍ତ ଶ୍ରମ ଫଳରେ ସ୍ୱାଧୀନତା ଆନ୍ଦୋଳନ ଏକ ସୁସ୍ପଷ୍ଟ ରୂପ ଧାରଣ କରିଥିଲା, ତନ୍ମଧ୍ୟରେ ଲାଲବାହାଦୁର ଶାସ୍ତ୍ରୀ ଥିଲେ ଅନ୍ୟତମ ।

ସେ ୧୯୦୪ ମସିହା ଅକ୍ଟୋବର ମାସ ୨ ତାରିଖରେ ପବିତ୍ର ପୀଠ ବାରାଣସୀ ନିକଟସ୍ଥ ମୋଗଲସରାଇଠାରେ ଜନ୍ମଲାଭ କରିଥିଲେ । ତାଙ୍କର ପିତାଙ୍କର ନାମ ଶାରଦା ପ୍ରସାଦ ଓ ମାତାଙ୍କ ନାମ ରାମଦୁଲାରୀ । ଆଦର୍ଶ ଜନନୀଙ୍କ ସାଧୁ ଚରିତ୍ରର ପ୍ରଭାବ, ବାଳକ ଲାଲବାହାଦୁରଙ୍କ ଉପରେ ପଡ଼ିଥିଲା । ପୁତ୍ର ପ୍ରତି ତାଙ୍କର ଅଗାଧ ସ୍ନେହ ଓ ମମତା ଥିଲା । ଛୋଟ ବେଳେ ଲାଲବାହାଦୁରଙ୍କୁ ସେ "ନାନ୍ହେ" ବୋଲି ଡାକୁଥିଲେ ।

ଦୁର୍ଭାଗ୍ୟବଶତଃ ଶାସ୍ତ୍ରୀଜୀଙ୍କୁ ମୋଟେ ଦେଢ଼ ବର୍ଷ ହୋଇଥିଲା ବେଳେ ପିତା ସାରଦା ପ୍ରସାଦଙ୍କର ଦେହାନ୍ତ ହୋଇଯାଇଥିଲା । ଫଳରେ ତାଙ୍କ ଜୀବନକୁସୁମ ବିକଶିତ ହୋଇଥିଲା – ଅଜା ଓ ମାମୁଁଙ୍କ ସହାୟତାରେ ।

ବନାରସସ୍ଥ କାଶୀ ବିଦ୍ୟାପୀଠରୁ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ସେ "ଶାସ୍ତ୍ରୀ" ଉପାଧି ଲାଭ କରିଥିଲେ ଏବଂ ଶ୍ରୀ ବାସ୍ତବ ସାଙ୍ଗା ପରିହାର କରିଥିଲେ । କାଶୀ ବିଦ୍ୟାପୀଠରେ ଡିଗ୍ରୀଲାଭ କରିବାର ତିନି ବର୍ଷ ପରେ ୧୯୨୮ ମସିହାରେ ମିର୍ଜାପୁରଠାରେ ସେ ଶ୍ରୀମତୀ ଲଳିତା ଦେବୀଙ୍କର ପାଣି ଗ୍ରହଣ କରିଥିଲେ ।

ପିଲାଟି ଦିନରୁ ଲାଲବାହାଦୁର ସରଳତାକୁ ଜୀବନର ଅନ୍ତର୍ନିହିତ ଗୁଣରୂପେ ମନ୍ତ୍ରାଗତ କରିଥିଲେ । ସରଳ ଓ ନିରାଡ଼ମ୍ବର ଜୀବନଯାପନ କରିବା ତାଙ୍କ ଜୀବନର ଆଦର୍ଶ ଥିଲା ।

ଜାତିର ପୂଜ୍ୟ ପିତା ମହାତ୍ମା ଗାନ୍ଧୀଙ୍କୁ ଦେଖି ବାଲ୍ୟବସ୍ଥାରୁ ଶାସ୍ତ୍ରୀଜୀଙ୍କ ହୃଦୟରେ ଜାତୀୟ ଚେତନା ଜାଗ୍ରତ ହୋଇଥିଲା । ଠିକ୍ ୨୫ ବର୍ଷ ପରେ ସେ ଭାରତର ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ । ସରକାରଙ୍କ ବିନାନୁମତିରେ ଲୁଣ ତିଆରି ପାଇଁ ପ୍ରସ୍ତୁତ ହେଲା ବେଳେ ସେ ପ୍ରଥମ ଥର ପାଇଁ ଏବଂ ୧୯୩୨, ୧୯୩୪, ୧୯୪୧, ୧୯୪୨ର ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ୬ ଥର ଜେଲ ଯାଇ ୯ ବର୍ଷ ବନ୍ଦୀଶାଳାରେ କଟାଇଥିଲେ । ଆହ୍ଲାବାଦ୍‌ଠାରେ ପଣ୍ଡିତ ନେହେରୁଙ୍କ ସହ ଏକାଠି ଗୋଟିଏ ଜେଲରେ ଥିଲାବେଳେ ସେ ଫରାସୀ ବୈଜ୍ଞାନିକ ମାଡ଼ାମ କ୍ୟୁରୀଙ୍କର ଜୀବନୀକୁ ହିନ୍ଦୀ ଭାଷାରେ ଲେଖିଥିଲେ ।

ସ୍ୱର୍ଗତ ଶାସ୍ତ୍ରୀ କେନ୍ଦ୍ରରେ ଘରୋଇ ବିଭାଗ ମନ୍ତ୍ରୀ ରୂପେ ଦାୟିତ୍ୱ ନେଲାବେଳେ, ସଂସଦ ସଭ୍ୟମାନେ ପରିହାସ କରି ତାଙ୍କୁ ଗୃହହୀନ ମନ୍ତ୍ରୀ ବୋଲି କହୁଥିଲେ । ଶାସ୍ତ୍ରୀଜୀ ତାଙ୍କ ଜୀବଦ୍ଦଶାରେ ନିଜର ବୋଲି ଘର ଖଣ୍ଡିଏ ମଧ୍ୟ ନିର୍ମାଣ କରିନଥିଲେ । ସେ ସରଳ ନିରାଡ଼ମ୍ବର ଜୀବନଯାପନ କରୁଥିଲେ । ମନ୍ତ୍ରୀ ପଦରେ ଅଧିଷ୍ଠିତ ହୋଇ ମଧ୍ୟ ସେ ଚିରା ପଞ୍ଜାବୀ ପରିଧାନ କରିବା ଦେଖାଯାଉଥିଲା । ଏକ ସମୟରେ ଶାସ୍ତ୍ରୀଜୀଙ୍କର ଜଣେ ନାତି ସ୍ଲେଟ ଖଣ୍ଡିଏ କିଣିବା ପାଇଁ ତାଙ୍କ ନିକଟରେ ଆସି ଅନୁରୋଧ ଜଣାଇଲେ । ଶାସ୍ତ୍ରୀଜୀ ନାତିକୁ ସ୍ନେହ କରି ମଧୁର ଭାବେ କହିଲେ, "ଆଉ କେତୋଟି ଦିନ ପରେ ଦରମା ମିଳିବ, ସ୍ଲେଟଟିଏ ନିଶ୍ଚୟ କିଣି ଦେବି । ଏଇ କେତୋଟି ଦିନ ଯେକୌଣସି ମତେ ଚଳାଇ ଦେ ।" ଶାସ୍ତ୍ରୀଜୀ ଚାହିଁଥିଲେ ନିମିଷକ ମଧ୍ୟରେ ପରିବାରର ଆର୍ଥିକ ଅସ୍ୱଚ୍ଛଳତାକୁ ଦୂର କରି ପାରିଥାନ୍ତେ କିନ୍ତୁ ଦେଶର କୋଟି କୋଟି ଅର୍ଥହୀନ ଲୋକଙ୍କ ସହିତ ନିଜକୁ ମିଶାଇ ଦେଇ ସେ ଯେଉଁ ଆଦର୍ଶ ଦେଖାଇଛନ୍ତି, ବାସ୍ତବିକ୍ ଏଭଳି ଦୃଷ୍ଟାନ୍ତ ବିଶ୍ୱ ଇତିହାସରେ ମଧ୍ୟ ବିରଳ ।

ପଣ୍ଡିତ ନେହେରୁଙ୍କର ତିରୋଧାନ (୨୭–୫–୧୯୬୪) ପରେ ୧୯୬୪ ଜୁନ୍ ମାସ ୨ ତାରିଖରେ ଶାସ୍ତ୍ରୀଜୀ ସର୍ବ ସମ୍ମତିକ୍ରମେ କଂଗ୍ରେସ ପାର୍ଲାମେଣ୍ଟାରୀ ପାର୍ଟିର ନେତା ରୂପେ ନିର୍ବାଚିତ ହେଲେ । ତା'ର ସାତଦିନ ପରେ ଅର୍ଥାତ୍ ୯ ତାରିଖରେ ଷୋହଳଜଣିଆ କ୍ୟାବିନେଟ ଶପଥ ଗ୍ରହଣ ଏବଂ ତାହାର କେତୋଟି ଦିନ ପରେ ପୂର୍ଣ୍ଣାଙ୍ଗ ମନ୍ତ୍ରୀମଣ୍ଡଳ ଶପଥଗ୍ରହଣ କରିଥିଲେ । ପ୍ରଧାନମନ୍ତ୍ରୀ ରୂପେ ଶପଥ ଗ୍ରହଣ କରିବା ପୂର୍ବରୁ ଶାସ୍ତ୍ରୀଜୀଙ୍କୁ ଜଣେ ଶାନ୍ତିବାଦୀ, ଧୈର୍ଯ୍ୟବାନ ଓ ସହନଶୀଳ ବ୍ୟକ୍ତି ରୂପେ ଲୋକେ ଜାଣିଥିଲେ ।

ପ୍ରଧାନମନ୍ତ୍ରୀତ୍ୱର ମୋଟ ଅଠର ମାସ ଶାସନ ଭିତରେ ସେ ସମଗ୍ର ଭାରତୀୟ ଜନତାର ହୃଦୟରେ ସ୍ଥାନ ପାଇଥିଲେ । ଶାନ୍ତି ସଦିଚ୍ଛାର ଓ ଆଦର୍ଶର ପୂଜାରୀ ରୂପେ ସେ ସୁଖ୍ୟାତି ଅର୍ଜନ କରିଥିଲେ । ତାଙ୍କ ଅଠର ମାସର ଶାସନକାଳ ଭାରତ ଇତିହାସରେ ଏକ ଅଶ୍ରୁତପୂର୍ବ ଗ୍ରନ୍ଥର ପରିଚ୍ଛେଦ ରଚନା କରିଥିଲା । ସେହି ୧୮ ମାସ ମଧ୍ୟରେ ସେ ଅତି ଜଟିଳ ସମସ୍ୟାମାନ ସମାଧାନ କରାଇପାରିଥିଲେ । ସେଗୁଡ଼ିକ ମଧ୍ୟରେ ଭାଷା ସମସ୍ୟା, ଖାଦ୍ୟ ସମସ୍ୟା, ପଞ୍ଜାବ ସମସ୍ୟା,

## ରାସ୍ତାଘାଟ ଓ ପୋଲ ନିର୍ମାଣ

ଆମ ଓଡ଼ିଶାରେ ଏପରି ଗ୍ରାମ ଅଛି ଯେଉଁ ଗ୍ରାମକୁ ଯାତାୟତ ପାଇଁ ସୁବିଧା ନାହିଁ। ଗ୍ରୀଷ୍ମ, ବର୍ଷା ଉଭୟ ସମୟରେ ରାସ୍ତା ଅସୁବିଧା ଯୋଗୁଁ ଯାନବାହାନ ଚଳାଚଳ ହେବା ସମ୍ଭବ ହୁଏ ନାହିଁ। ତେଣୁ ରାଜ୍ୟ ସରକାର ଗାଁ ଗହଳି, ବିଶେଷ କରି ପାର୍ବତ୍ୟ ଅଞ୍ଚଳରେ ଗମନାଗମନର ଅଧିକ ସୁବିଧା ଯୋଗାଇ ଦେବା ନିମନ୍ତେ ସମୁଚିତ ପଦକ୍ଷେପ ଗ୍ରହଣ କରିଛନ୍ତି। ଶାସନର ପ୍ରଥମ ଦୁଇବର୍ଷ ଅର୍ଥାତ୍ ୧୯୯୦-୯୧ ଓ ୧୯୯୧-୯୨ ଏହି ଦୁଇବର୍ଷ ମଧ୍ୟରେ ୩୪.୧୫ କୋଟି ଟଙ୍କା ବ୍ୟୟରେ ୧୯ଟି ସେତୁ ନିର୍ମାଣ କରାଯାଇଥିଲା ଏବଂ ଏହି ସେତୁ ନିର୍ମାଣ କାର୍ଯ୍ୟ ଗ୍ରାମ୍ୟ ଉନ୍ନୟନ ବିଭାଗ ଦ୍ୱାରା ସମାହିତ ହୋଇଛି। ୧୯୯୨ ମସିହା ମାର୍ଚ୍ଚ ମାସ ସୁଦ୍ଧା ୩୪୬ଟି ପୋଲ ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଇଛି। ୨୨୫ କି.ମି. ଗ୍ରାମାଞ୍ଚଳର ରାସ୍ତା ପିଚୁ ହୋଇଛି ଓ ୧୭୧ କି.ମି. ପକ୍କା କରାଯାଇଛି। ଏହା ବ୍ୟତୀତ ବହୁ ଦୁର୍ଗମ ଅଞ୍ଚଳରେ ଥିବା ପ୍ରାୟ ୨୦୦ରୁ ଊର୍ଦ୍ଧ୍ୱ ଗ୍ରାମକୁ ସବୁଦିନିଆ ଭଲ ରାସ୍ତା ତିଆରି କରାଯାଇଛି। ଏଣିକି ସେହି ଅଞ୍ଚଳର ଲୋକମାନେ ନିର୍ବିଘ୍ନରେ ରାଜ୍ୟର ଅନ୍ୟାନ୍ୟ ଅଞ୍ଚଳକୁ ଯାତାୟତ କରିପାରୁଛନ୍ତି।

## ପରିମଳ ବ୍ୟବସ୍ଥା

ଗ୍ରାମର ପରିମଳ ବ୍ୟବସ୍ଥା ପ୍ରତି ରାଜ୍ୟ ସରକାର ଦୃଷ୍ଟି ଦେଇଛନ୍ତି। ପାନୀୟ ଜଳ ଯୋଗାଣ, ରାସ୍ତାଘାଟ, ପୋଲ ଇତ୍ୟାଦି ନିର୍ମାଣ ସହିତ ସୁସ୍ଥ ଓ ସ୍ୱାସ୍ଥ୍ୟକର ପରିବେଶ ପ୍ରତି ଅଧିକ ସଚେତନ ହୋଇଛନ୍ତି। ୧୯୯୧-୯୨ ବର୍ଷରେ ଗ୍ରାମ୍ୟ ପରିମଳ କାର୍ଯ୍ୟକ୍ରମ ପାଇଁ ୭୦ ଲକ୍ଷ ଟଙ୍କା ବ୍ୟୟ ବରାଦ ହୋଇଥିଲା। ୧୯୯୨-୯୩ ବର୍ଷରେ ୧୫୦.୦୦ ଲକ୍ଷ ଟଙ୍କା ବ୍ୟୟ ବ୍ୟବସ୍ଥା ହୋଇଥିଲା। ପଞ୍ଚାୟତ ସମିତିର ଯେଉଁ ମହକୁମା ବା ଦର୍ଶନୀୟ ସ୍ଥାନ, ସେହିସବୁ ଗ୍ରାମଗୁଡ଼ିକରେ ଅନେକ ସମୟ ଜନସମାଗମ ହୋଇଥାଏ। ତେଣୁ ସରକାର ଗ୍ରାମ୍ୟ ଉନ୍ନୟନ ବିଭାଗ ଦ୍ୱାରା ସେହି ସବୁ ସ୍ଥାନରେ ସୁଲଭ ଶୌଚାଳୟ ସ୍ଥାପନ କରିଛନ୍ତି। ଗ୍ରାମ୍ୟ ପରିମଳ ଯୋଜନାରେ ଗ୍ରାମାଞ୍ଚଳରେ ଘରୋଇ ପାଇଖାନା କାର୍ଯ୍ୟକ୍ରମକୁ ଅଧିକ ପ୍ରାଧାନ୍ୟ ଦିଆଯାଇଛି। ଗାଁ ଗହଳିରେ ଥିବା ନଳକୂପ ଚଟାଣର ଚାରିପଟେ ପାଣି ଜମି ବହୁ ମଶା, ମାଛି ହେବା ଦ୍ୱାରା ଅସ୍ୱାସ୍ଥ୍ୟକର ପରିବେଶ ସୃଷ୍ଟି ହେଉଥିଲା। ସେହିସବୁ ସ୍ଥାନରେ ନଳା କରାଯାଇ ପାଣି ନିଷ୍କାସନର ବ୍ୟବସ୍ଥା ହୋଇଛି। ଗ୍ରାମ୍ୟ ପରିମଳ ବ୍ୟବସ୍ଥାକୁ ଉନ୍ନତ କରିବା ଦିଗରେ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ। ପାଇଖାନାରୁ ନିର୍ଗତ ହେଉଥିବା ଜୈବିକ ବାଷ୍ପ ଇନ୍ଧନ ରୂପେ ବ୍ୟବହାର କରାଯାଇ ପାରିବ ଏବଂ ଗୋବର ଗ୍ୟାସ୍ ପରି ଗ୍ୟାସ୍ ଜାଳେଣି ଭାବେ ବ୍ୟବହାର କରି ହେବ। ଲୋକମାନଙ୍କୁ ଏ ସମ୍ପର୍କରେ ଶିକ୍ଷା ଦେବା ପାଇଁ ଗଞ୍ଜାମ ଜିଲ୍ଲାରେ ୨୨ଟି ଗ୍ରାମରେ ସାମୁହିକ ପାଇଖାନା ନିର୍ମାଣ କରାଯାଇଛି। ଗ୍ରାମର ୫ ଜଣ ଅଥବା ୧୦ ଜଣ ଏକ ସମୟରେ ବ୍ୟବହାର କରିବା ଭଳି ପାଇଖାନା ନିର୍ମାଣ କରାଯାଇ ସେଥିରୁ ଜୈବିକ ଗ୍ୟାସ୍ ଜାଳେଣି ପ୍ରକଳ୍ପକୁ ସଂଯୋଗ କରାଯାଇଛି। ପ୍ରାୟ ୧ କୋଟି ଟଙ୍କା ଏହି ପ୍ରକଳ୍ପରେ ପ୍ରାରମ୍ଭିକ ବ୍ୟୟ ହୋଇଥିଲା। ତେବେ ଅନୁନ୍ନତ ମାଳ ଅଞ୍ଚଳଠାରୁ ଉନ୍ନତ କଟକ ସହର ସବ୍‌ଡ଼ିଭିଜନ୍ ପର୍ଯ୍ୟନ୍ତ ସବୁ ସ୍ଥାନରେ ଗ୍ରାମାଞ୍ଚଳର ଉନ୍ନତି ହୋଇଛି। ଗ୍ରାମ୍ୟ ପରିମଳ ଯୋଜନା କାର୍ଯ୍ୟକ୍ରମରେ ସ୍ୱାସ୍ଥ୍ୟ ଶିକ୍ଷା କାର୍ଯ୍ୟକ୍ରମକୁ ମଧ୍ୟ ଅନ୍ତର୍ଭୁକ୍ତ କରାଯାଇଛି। ଗ୍ରାମାଞ୍ଚଳରେ ବାସ କରୁଥିବା ଲୋକମାନଙ୍କୁ ନିରାପଦ ପାଣି ପିଇବାର ଉପଯୋଗିତା ତଥା ସ୍ୱାସ୍ଥ୍ୟକର ପରିବେଶର ଆବଶ୍ୟକତା ଓ ନିଜେ ପରିଷ୍କାର ପରିଚ୍ଛନ୍ନ ରହିବା ଦ୍ୱାରା ମନର ନିର୍ମଳତା ଉପରେ ଏହି କାର୍ଯ୍ୟକ୍ରମ ମାଧ୍ୟମରେ ଅବଗତ କରାଇ ଦିଆଯାଉଛି। କୃଷୀମାନଙ୍କୁ ଋଣଛାଡ଼ ତଥା ଖଟିଖିଆ ଦିନ ମଜୁରିଆଙ୍କର ଦୈନିକ ସର୍ବନିମ୍ନ ମଜୁରି ୨୫ ଟଙ୍କାକୁ ବୃଦ୍ଧି କରିବା ରାଜ୍ୟ ସରକାରଙ୍କର ଦୁଃସାହାସିକ ପଦକ୍ଷେପ କହିଲେ ଅତ୍ୟୁକ୍ତି ହେବ ନାହିଁ। ଏହିପରି ଗାଁଗହଳିରେ ଭିନ୍ନ ଭିନ୍ନ ଉପାୟରେ ଉନ୍ନତି ନିମନ୍ତେ ସରକାର ଗ୍ରାମାଞ୍ଚଳର ପ୍ରଗତି ତଥା ଗ୍ରାମବାସୀଙ୍କର ଉନ୍ନତି ନିମନ୍ତେ ବହୁ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି ଏବଂ ତାହା କାର୍ଯ୍ୟକାରୀ କରିବା ଦିଗରେ ମଧ୍ୟ ସହାୟକ ହୋଇଛନ୍ତି।

ଘର ନମ୍ବର-ଇ ୬୩/୪,
ରେଣ୍ଟାଲ କଲୋନୀ,
ସି.ଆର୍.ପି.ଏଫ୍., ଭୁବନେଶ୍ୱର।




ସୂଚନାଭବନଠାରେ ଉଚ୍ଚ ଶିକ୍ଷାମନ୍ତ୍ରୀ ଶ୍ରୀ ଚୈତନ୍ୟ ପ୍ରସାଦ ମାଝି ସ୍ୱର୍ଣ୍ଣଯୁଗ ପ୍ରବର୍ତ୍ତକ ଶ୍ରୀ ରାମଚନ୍ଦ୍ର ଭଞ୍ଜଦେବ ନାମକ ଏକ ପୁସ୍ତକ ଉନ୍ମୋଚନ କରୁଛନ୍ତି।

# ଆଦ୍ୟାଶକ୍ତି ସନାତନୀ ସୁଭଦ୍ରା

* ଇଞ୍ଜିନିୟର ରଘୁନାଥ ପାଢ଼ୀ

ଉକ୍ତ ଶାସ୍ତ୍ରରେ ଉତ୍କଳର ଅନ୍ୟନାମ ଉଡ୍‌ଡୀୟାନ୍ ପୀଠ ଓ ଉକ୍ତ ପୀଠର କେନ୍ଦ୍ର ସ୍ଥଳରେ ଆଦ୍ୟଶକ୍ତି ସୁଭଦ୍ରା ବିଦ୍ୟମାନ । ଉକ୍ତ ପୀଠ ସପ୍ତାବରଣ ଶକ୍ତିଦ୍ୱାରା ସୁରକ୍ଷିତ ଯଥା :- (୧) ଶ୍ରୀପୀଠ (୨) ଗାଦ ପୀଠ (୩) ଶକ୍ତି ପୀଠ (୪) ଆବରଣ ମାତୃକା ପୀଠ (୫) ଭୈରବୀ ପୀଠ (୬) ରୁଦ୍ର ପୀଠ (୭) ଭୈରବ ପୀଠ ଇତ୍ୟାଦି । ଭଦ୍ରା ସ୍ୱରୂପା ସୁଭଦ୍ରା ସଚରାଚର ସମସ୍ତ ଶକ୍ତି ତଥା ଶୁଭକର୍ମର ଉତ୍ସ । ଯାହାଦ୍ୱାରା ଏ ସୃଷ୍ଟି ଭଦ୍ରା, ସେହି ସୁଭଦ୍ରା ।

"ଜୟ ଭଦ୍ରେ ସୁଭଦ୍ରେ ତ୍ୱଂ ସର୍ବେଷାଂ ଭଦ୍ରଦାୟିନୀ ।
ଭଦ୍ରାଭଦ୍ର ସ୍ୱରୂପା ତ୍ୱଂ ଭଦ୍ରକାଳୀ ନମୋସ୍ତୁତେ ।।"

(ସ୍କନ୍ଦ ପୁରାଣ, ଉ: ଖ: ୨୬/୪୭)

ସୁଭଦ୍ରା ତତ୍ତ୍ୱ ଶକ୍ତିତତ୍ତ୍ୱର ସର୍ବୋଚ୍ଚ ତତ୍ତ୍ୱ । ପ୍ରତିବର୍ଷ ଆଶ୍ୱିନ ମାସରେ ସୁଭଦ୍ରାଙ୍କ ଆଜ୍ଞାମାଳ ପ୍ରାପ୍ତି ପରେ ଶ୍ରୀମନ୍ଦିରରେ ଦୁର୍ଗୋତ୍ସବ ପାଳନ କରାଯାଏ । ଦେବୀଙ୍କ ଦେବଦଳନ ରଥର ପାର୍ଶ୍ୱଦେବୀ, ରଥଦେବୀ, ରକ୍ଷୟିତ୍ରୀ, ଧ୍ୱଜାଧିପତି ଓ ସାରଥିରୁ ସୁଭଦ୍ରାଙ୍କ ପରିଚୟ ପର୍ଯ୍ୟାପ୍ତ । ସୁଭଦ୍ରା ଲୀଳାଜନିତ ଦ୍ୱାପର ଯୁଗର ବିଷ୍ଣୁ ଅଂଶ ସମ୍ଭୂତ କୃଷ୍ଣ ସଖା ଅର୍ଜୁନଙ୍କ ପତ୍ନୀ ହୋଇଥିଲେ ମଧ୍ୟ ଦେବୀ ସାକ୍ଷାତ୍ ମୂଳଭୂତା ଆଦ୍ୟାଶକ୍ତି ସନାତନୀ । ସେ ସମସ୍ତ ଶକ୍ତିର ଉତ୍ସ ପୁରୁଷୋତ୍ତମଙ୍କ ଅକ୍ଷର ତତ୍ତ୍ୱ ଓ କାମିଲ୍ୟବାସିନୀ ବିସର୍ଗମାତାସିକା (ଃ) ମାୟା । ସେ ପଦ୍ମଯୋନି ରୂପେ ସ୍ତ୍ରୀ, ପୁରୁଷ ଉଭୟର ପ୍ରତୀକ ।

"ଶକ୍ତିଂ ପରାତ୍ ପରତରା ଚପଳାଭ ଦେହା ।
ବିସର୍ଗ ସର୍ଗ ନିଳୟା ସ୍ୱରୂପା ବିଦେହା ।।
ବ୍ରହ୍ମାଦିକାକ୍ଷରମୟୀ ଜନୟତ୍ରୀ ଧାତ୍ରୀ ।
ଭଦ୍ରାଂ ତ୍ୱମେକବହୁଳାଂ ଭୁବନେଶୀ ବନ୍ଦେ ।।"

(ନୀଳ ତନ୍ତ୍ର)

ସେ ବ୍ରହ୍ମ ଓ ଜୀବ ମଧ୍ୟବର୍ତ୍ତୀ ଜାଗତିକ ବିକାଶର କ୍ରୀଡ଼ାଶକ୍ତି ମାୟା । ବଳଭଦ୍ରଙ୍କ ଶୁକ୍ଳବର୍ଣ୍ଣ ବା ଆଲୋକ (ଦିନ) ଓ ଜଗନ୍ନାଥଙ୍କ କାଳିମା ବା ତମସା (ରାତ୍ରି)ର ସଂଯୋଜିକା ଶକ୍ତି ସନ୍ଧ୍ୟାରୂପିଣୀ ସୁଭଦ୍ରା । ସଂକ୍ଷେପରେ କହିଲେ, ବଳଭଦ୍ର ହେଉଛନ୍ତି ଜୀବ ଚୈତନ୍ୟ ବା ସାଧକ, ଜଗନ୍ନାଥ ବ୍ରହ୍ମ ଚୈତନ୍ୟ ବା ସାଧ୍ୟ ଓ ସୁଭଦ୍ରା ହେଉଛନ୍ତି ମଧ୍ୟବର୍ତ୍ତୀ କ୍ରିୟାସିକା ସହଯାତ ଶକ୍ତି, ସାଧନା । ସୁଭଦ୍ରା ପ୍ରଳୟ ତତ୍ତ୍ୱରେ ଭୁବନେଶ୍ୱର ଶିବଙ୍କ ଅର୍ଦ୍ଧାଙ୍ଗିନୀ ରୂପେ ଭୁବନେଶ୍ୱରୀ ଶିବା, ପାଳନ ତତ୍ତ୍ୱରେ ବିଷ୍ଣୁ ବକ୍ଷସ୍ଥଳବାସିନୀ ମହାଲକ୍ଷ୍ମୀ ଓ ସୃଷ୍ଟି ତତ୍ତ୍ୱରେ ପ୍ରଥମ ପ୍ରକୃତି ରୂପେ ପଦ୍ମଯୋନି ବ୍ରହ୍ମାଙ୍କ ମୁଖାଶ୍ରିତା ବ୍ରହ୍ମାଣୀ ସାବିତ୍ରୀ ହେଲେ ମଧ୍ୟ ହରିପ୍ରିୟା ବୈଷ୍ଣବୀ ଶକ୍ତିରୂପେ ତ୍ରିଭୁବନ ବିଦିତା ।

"ବକ୍ଷ ସ୍ଥଳେ ସ୍ଥିତେର୍ବିଷ୍ଣୋ, ଶମ୍ଭୋ ଅର୍ଦ୍ଧାଙ୍ଗ ଶୋଭିତାଂ ।
ପଦ୍ମଯୋନି ମୁଖାଦବସ୍ଥାଂ ତାଂ ନମାମି ହରିପ୍ରିୟାମ୍ ।।"

(ସ୍କନ୍ଦ ପୁରାଣ)

ଗୁହ୍ୟ କାଳୀ ଉପନିଷଦରେ ମାଆଙ୍କ ଅନ୍ୟନାମ "ଗୁହ୍ୟା" । ଗୁହ୍ୟା ଶବ୍ଦର ଅର୍ଥ ଦୁଇଟି ପ୍ରକାଶିତ ବସ୍ତୁ ମଧ୍ୟସ୍ଥିତ ଗୋପନୀୟ ବା ଗୁପ୍ତ ବସ୍ତୁ । ସେ ଜଗତ (ବଳଭଦ୍ର) ଓ ଜଗନ୍ନାଥଙ୍କ ମଧ୍ୟରେ ମାୟା ବା ଗୁହ୍ୟା ରୂପେ କରପାଦାଦି ରହିତା । ପ୍ରୟୋଜନ ବିଧିରେ ବିଶ୍ୱ ପ୍ରସବିନୀ ଅଜ୍ଞେୟ ଆଦ୍ୟାଶକ୍ତି (Cosmo physical energy ବା Inscrutable power) ବିଭିନ୍ନ ରୂପରେ ବିଖ୍ୟାତ, ପ୍ରତିଭାତ ହୁଅନ୍ତି । ବିଶ୍ୱ ବ୍ରହ୍ମାଣ୍ଡର ସମସ୍ତ ସ୍ତ୍ରୀ ଓ ପୁରୁଷ ସୁଭଦ୍ରା ଓ ଜଗନ୍ନାଥଙ୍କ ଅଂଶ ବିଶେଷ ।

"ତ୍ୱଂ ମାତା ଜଗତଂ ଦେବୀ ପିତା ନାରାୟଣୋ ହି ମଃ ।
ସ୍ତ୍ରୀ ରୂପଂ ସର୍ବମେବତ୍ୱଂ ପୁଂରୂପେ ଜଗଦୀଶ୍ୱରଃ ।"

(ସ୍କନ୍ଦପୁରାଣ ଉ:ଖ:-୨୬/୫୮)

**ସ୍ୱରଚିତ :**

ତନ୍ତ୍ର ଶାସ୍ତ୍ରେ ଉତ୍କଳର ନାମ ଉଡ୍‌ଡୀୟାନ୍ ।
କେନ୍ଦ୍ରସ୍ଥଳେ ଆଦ୍ୟାଶକ୍ତି ଭଦ୍ରା ଅବସ୍ଥାନ ।। ୧ ।।
ସପ୍ତାବରଣ ଶକ୍ତିରେ ପୀଠ ସୁରକ୍ଷିତ ।
ସର୍ବଶକ୍ତି ଉତ୍ସ ଭଦ୍ରାଦେବୀ ଜଗନ୍ମାତ ।। ୨ ।।
ଯାହାଦ୍ୱାରା ସୃଷ୍ଟି ଭଦ୍ର ସେହି ସୁଭଦ୍ରିକା ।
ଶୁଭକର୍ମ ଉତ୍ସଦେବୀ ବିସର୍ଗ- ଆସିକା ।। ୩ ।।
ସର୍ବୋତ୍ତମ ଶକ୍ତିତତ୍ତ୍ୱ ସୁଭଦ୍ରାଙ୍କ ତତ୍ତ୍ୱ ।
ଦୁର୍ଗୋତ୍ସବ ହୁଏ ଆଜ୍ଞାମାଳ ହେଲେ ପ୍ରାପ୍ତ ।। ୪ ।।
ପାର୍ଶ୍ୱଦେବୀ, ରଥଦେବୀ 'ଦର୍ପଦଳନ'ରୁ ।
ଭଦ୍ରାଦେବୀ ପରିଚୟ ସୁସ୍ପଷ୍ଟ, ସୁଖରୁ ।। ୫ ।।

ମହାରାଷ୍ଟ୍ର, ମହୀଶୂର–ଗୋଆ ସମସ୍ୟା, କେରଳର କମ୍ୟୁନିଷ୍ଟ ସ୍ରୋତ, ଭାରତ ପାକିସ୍ତାନ ବିବାଦ, ଭାରତ ଚୀନ୍ ସୀମା ବିବାଦ ପ୍ରଭୃତି ରାଜନୈତିକ ଓ ଆର୍ଥିକ ସମସ୍ୟାମାନ ପ୍ରଧାନ । ଏହିସବୁ ସମସ୍ୟାର ସମାଧାନ ଦିଗରେ ଶାସ୍ତ୍ରୀଜୀଙ୍କ ପରିପକ୍ୱ ରାଜନୈତିକ ବିଚକ୍ଷଣତା ସ୍ପଷ୍ଟ ପରିଲକ୍ଷିତ ହୁଏ । ପାକିସ୍ତାନର କଚ୍ଛ ଆକ୍ରମଣ ଜନିତ ସମସ୍ୟା ଶାସ୍ତ୍ରୀଜୀଙ୍କୁ ଏହି ତୀବ୍ରତର ସମସ୍ୟାର ସମ୍ମୁଖୀନ ହୋଇଥିଲା । ଫଳରେ ଏହି ସମସ୍ୟାର ସମାଧାନ ପାଇଁ ପାକିସ୍ତାନ, ୧୯୬୫ ଅପ୍ରେଲ ୧୩ ତାରିଖ ଦିନ ଏକ ତିନିସୂତ୍ର ସମ୍ବଳିତ ପ୍ରସ୍ତାବ ଦେଲା । ଶାସ୍ତ୍ରୀଜୀ ତାହା ଗ୍ରହଣ କଲେ । କିନ୍ତୁ ପାକିସ୍ତାନ ସରକାର ପରେ ନିଜ ପ୍ରସ୍ତାବ ପ୍ରତ୍ୟାହାର କରିଥିଲେ ।

କଚ୍ଛ ଘଟଣା ପରେ ପରେ ପାକ୍ ନେତାଗଣ ଭାରତ ବିରୁଦ୍ଧରେ ପୁଣି ଗୋଟିଏ ଯୁଦ୍ଧର ଆୟୋଜନ କଲେ । ଏଥିରେ ଚୀନ୍‌ର ସାମରିକ ବିଶେଷଜ୍ଞମାନେ ମଧ୍ୟ ଯଥେଷ୍ଟ ସାହାଯ୍ୟ କଲେ । ୧୯୬୫ ଅଗଷ୍ଟ ମାସରେ ପାକିସ୍ତାନର ଅନୁପ୍ରବେଶକାରୀମାନେ କାଶ୍ମୀରରେ ପ୍ରବେଶ କରି ନାନା ବିଭ୍ରାଟ ସୃଷ୍ଟି କଲେ । ଶାସ୍ତ୍ରୀଜୀ ପାକିସ୍ତାନ ସରକାରଙ୍କୁ ଯେତେ ଅନୁରୋଧ ଜଣାଇଲେ, ସେସବୁ ନିଷ୍ଫଳ ହେଲା । ଶାସ୍ତ୍ରୀଜୀ ଏ ଘଟଣାରେ ନିଜର ସବଳତାର ପରିଚୟ ଦେଲେ । ଆକୁମାରୀ ହିମାଚଳ ଦେଶର ସମସ୍ତ ନରନାରୀ ସ୍ୱତଃପ୍ରବୃତ୍ତ ହୃଦୟରେ ଶାସ୍ତ୍ରୀଜୀଙ୍କ ନିଷ୍ପତ୍ତିକୁ ସମର୍ଥନ ଜଣାଇଲେ, ଯାହା ଫଳରେ ଦେଶକୁ ବଳିଷ୍ଠ ନେତୃତ୍ୱ ଦେବାରେ ତାହା ତାଙ୍କୁ ଯଥେଷ୍ଟ ସାହାଯ୍ୟ କଲା । ସେପ୍ଟେମ୍ବର ୬ ତାରିଖରେ ପାକିସ୍ତାନୀ ଉଡ଼ାଜାହାଜ ସର୍ବପ୍ରଥମେ ୱାଗାଠାରେ ଅନ୍ତର୍ଜାତିକ ସୀମାରେଖା ଅତିକ୍ରମ କଲା ଓ ଅମୃତସରଠାରେ ଭାରତୀୟ ବିମାନବାହିନୀ ଉପରକୁ ରକେଟ୍ ନିକ୍ଷେପ କଲା । ଭାରତର ସ୍ୱାଧୀନତାକୁ ବଜାୟ ରଖିବା ପାଇଁ ପ୍ରଧାନମନ୍ତ୍ରୀ ଶାସ୍ତ୍ରୀ ଦେଶବାସୀଙ୍କୁ ଆହ୍ୱାନ ଦେଲେ । ସମର ବେଳେ ବଜ୍ର କଣ୍ଠରେ ସେ ଘୋଷଣା କଲେ–"ମାଟିରେ ମିଶିଯିବା ପଛକେ ଆତ୍ମସମର୍ପଣ କରିବା ନାହିଁ । କ୍ଷୁଧାରେ ମରିଯିବା ପଛକେ ଭିକ୍ଷାର୍ଥୀ ହୋଇ ପୃଥିବୀର ଦ୍ୱାରେ ଦ୍ୱାରେ ବୁଲିବା ନାହିଁ । ନିଜବଳରେ ହିଁ ଲଢ଼ିବା, ନିଜ ଉଦ୍ୟମରେ ହିଁ ଉତ୍ପାଦନ କରି ଆତ୍ମରକ୍ଷା କରିବା" ଏବଂ ତାଙ୍କର ଅନ୍ୟ ଘୋଷଣାଟି ହେଲା– "ଅନ୍ୟ ଦେଶର ଇଞ୍ଚେ ମାଟି ହିଁ ଆମେ ଛୁଇଁବୁ ନାହିଁ । ତା' ସଙ୍ଗେ ସଙ୍ଗେ ଆମ ଦେଶର ଏକ ଇଞ୍ଚ ଭୂମିକୁ ଅନ୍ୟ କେହି ବଳପୂର୍ବକ ଛଡ଼ାଇ ନେବାକୁ ଆମେ ସୁଯୋଗ ଦେବୁ ନାହିଁ ।" ଭାରତୀୟ ଜନତାମାନରେ ଅପୂର୍ବ ଉଦ୍ଦୀପନା ଜାଗ୍ରତ କରାଇବାରେ ଶାସ୍ତ୍ରୀଜୀ କୃତକାର୍ଯ୍ୟ ହେଲେ । ପାକ୍‌ବାହିନୀ ଓ ନେତାମାନେ ଭାରତକୁ ଯୁଦ୍ଧର ଭୟ ଦେଖାଇବାକୁ ଯାଇ ଭାରତୀୟ ସେନାବାହିନୀର ପ୍ରତ୍ୟାକ୍ରମଣରେ ହିଁ ପଡ଼ିଲେ । ଏହି ପରିସ୍ଥିତିରେ ଜାତିସଂଘ ସେକ୍ରେଟାରୀ ଉଥାଣ୍ଟ ଯୁଦ୍ଧ ବନ୍ଦ କରିବା ପାଇଁ ଉଭୟ ଦେଶକୁ ନିବେଦନ କରିବା ଫଳରେ ଉଭୟ ଦେଶ ତାହା ଗ୍ରହଣ କଲେ । ଯୁଦ୍ଧ ପରେ ଶାନ୍ତି ହିଁ ଶାସ୍ତ୍ରୀଜୀଙ୍କର କାମ୍ୟ ଥିଲା ।

ଋଷ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ କୋସିଗିନ ଭାରତ ପାକିସ୍ତାନ ମଧ୍ୟରେ ଉପୁଜିଥିବା ଜଟିଳ ବିବାଦର ସମାଧାନ ନିମିତ୍ତ ତାସ୍‌କେଣ୍ଟ ବୈଠକରେ ଯୋଗଦେବା ପାଇଁ ଶ୍ରୀଯୁକ୍ତ ଶାସ୍ତ୍ରୀ, ପ୍ରେସିଡେଣ୍ଟ ଆୟୁବଙ୍କୁ ପତ୍ରରେ ଅନୁରୋଧ କଲେ । ଦୀର୍ଘ ୧୮ ବର୍ଷ ଧରି ଯୁଦ୍ଧ ବର୍ଜନ ଚୁକ୍ତି ସମ୍ପାଦନ ପାଇଁ ଯେଉଁ ପାକିସ୍ତାନ ଶାସକମାନେ ଅସ୍ୱୀକାର କରୁଥିଲେ, ଜାନୁଆରୀ ୧୦ ତାରିଖ ତାସକେଣ୍ଟ ବୈଠକରେ ତାହା ସ୍ୱାକ୍ଷର କରିବା ପାଇଁ ବାଧ୍ୟ ହେଲେ । ତାସ୍‌କେଣ୍ଟ ବୈଠକର ଆଲୋଚନା ଦୁଇ ଦେଶ ମଧ୍ୟରେ ଥିବା ସମସ୍ୟାଗୁଡ଼ିକର ଶାନ୍ତିପୂର୍ଣ୍ଣ ସମାଧାନର ପଥ ପରିଷ୍କାର କଲା ଏବଂ ଏହି ଘୋଷଣା ଭାରତ ଇତିହାସରେ ଏକ ଅଭିନବ ପୃଷ୍ଠା ସୃଷ୍ଟି କଲା । ସେହି ଦିନ ହିଁ ରାତି ୧ ଘଣ୍ଟା ୨୫ ମିନିଟ୍ ବେଳେ ସେ କଣ୍ଠଦ୍ୱାରା ଛାତିରେ ସାମାନ୍ୟ ଯନ୍ତ୍ରଣା ଅନୁଭବ କଲେ । ତତ୍ ପରେ ଡାକ୍ତରମାନେ ଆସି ସମସ୍ତ ଚିକିତ୍ସା ବ୍ୟବସ୍ଥା କରିଥିଲେ । କିନ୍ତୁ ମନୁଷ୍ୟର ସମସ୍ତ ଚେଷ୍ଟା ବିଫଳ ହେଲା । ସେ ସମସ୍ତ ଭାରତବାସୀଙ୍କୁ ଶୋକସାଗରରେ ଭସାଇ ଦେଇ ୧୯୬୬ ମସିହା ଜାନୁଆରୀ ୧୦ ତାରିଖ ଦିନ ରାତି ୧ ଘଣ୍ଟା ୩୨ ମିନିଟରେ ବିଧିର ବିଧାନ ଅନୁଯାୟୀ ଚିର ଦିନ ପାଇଁ ବିଦାୟ ନେଲେ ।

ଶାସ୍ତ୍ରୀଜୀ ଶାନ୍ତି ଓ ଯୁଦ୍ଧ ଉଭୟ ସମୟରେ ଜଣେ ସଫଳ ନେତା ରୂପେ ସମଗ୍ର ପୃଥିବୀରେ ଅପୂର୍ବ ପରାକାଷ୍ଠା ଦେଖାଇ ଯାଇଛନ୍ତି ।

ସେ ଆଜି ଇହଜଗତରେ ନାହାନ୍ତି ସତ, କିନ୍ତୁ ତାଙ୍କର ଆତ୍ମା ଆମକୁ ଉପରେ ରହି ପ୍ରେରଣା ଦେଉ ତାଙ୍କର ସେହି ମନ୍ତ୍ର "ଜୟ ଜବାନ୍ ଜୟ କିଷାନ୍" ଯୁଗଯୁଗ ଧରି ଭାରତବାସୀଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ରହୁ । ଏତିକି ହିଁ ଆଜି ବିଶ୍ୱନିୟନ୍ତାଙ୍କ ନିକଟରେ ଆମର ପ୍ରାର୍ଥନା ।

ଘର ନଂ: ଏମ୍.ଆଇ.ଜି.–୧,
୪୨/୧, ଚନ୍ଦ୍ରଶେଖରପୁର ହାଉସିଂ ବୋର୍ଡ
କଲୋନୀ, ଭୁବନେଶ୍ୱର-୧୬ ।

# କଥାକାର ଫକୀରମୋହନ : ଏକ ଅଧ୍ୟୟନ

* ଶ୍ରୀ ସିଦ୍ଧାର୍ଥ କାନୁନ୍‌ଗୋ

ଚିନ୍ତା ବ୍ରାହ୍ମଣର ପଇତା ଯେପରି ନିଷ୍ପ୍ରୟୋଜନ ଠିକ୍ ସେହିପରି ଫକୀରମୋହନଙ୍କ ସାହିତ୍ୟ କୃତି ସମ୍ପର୍କରେ ଉପୋଦ୍‌ଘାତର ଏକ ପାରମ୍ପରିକ ସୁଯୋଗ ସୃଷ୍ଟି କରିବା ଏକାନ୍ତ ଅନାବଶ୍ୟକ । ଆଧୁନିକ ଓଡ଼ିଆ ଗଳ୍ପ ଉପନ୍ୟାସର ସ୍ରଷ୍ଟା ଭାବରେ ସେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ଅପ୍ରତିଦ୍ୱନ୍ଦ୍ୱୀ ସମ୍ରାଟ । ଏହା ନିଃସନ୍ଦେହରେ ବ୍ୟକ୍ତ କରାଯାଇପାରେ ।

ଫକୀରମୋହନଙ୍କୁ ରାଧାନାଥଙ୍କ ଯୁଗର ଅନ୍ତର୍ଭୁକ୍ତ କରାଗଲେ ମଧ୍ୟ ସ୍ୱକୀୟ ଶୈଳୀ ଓ ସାହିତ୍ୟିକ ବୈଶିଷ୍ଟ୍ୟ ଯୋଗୁଁ ତାଙ୍କୁ ଏକ ସ୍ୱତନ୍ତ୍ର ଶ୍ରେଣୀର ସାରସ୍ୱତ ସାଧକ ରୂପେ ବିବେଚନା କରାଯାଏ । କେବଳ ଚିଲିକା ଓ ମହାଯାତ୍ରାକୁ ଛାଡ଼ିଦେଲେ ରାଧାନାଥଙ୍କ ସମସ୍ତ କାବ୍ୟ ପ୍ରାୟ ବିଦେଶୀ କଥାବସ୍ତୁର ପୃଷ୍ଠଭୂମିରେ ରଚିତ ହୋଇଛି । ମାତ୍ର ଫକୀରମୋହନ ଏ କ୍ଷେତ୍ରରେ ଏକ ବ୍ୟତିକ୍ରମ । ଫକୀରମୋହନ ହିଁ ଯଥାର୍ଥରେ ଓଡ଼ିଶାର ଜାତୀୟ କଥାକାର । ଏ ପ୍ରସଙ୍ଗରେ ଆଲୋଚକ ସୁରେନ୍ଦ୍ର ମହାନ୍ତିଙ୍କର ଏକ ଉକ୍ତି ପ୍ରଣିଧାନର ଯୋଗ୍ୟ– "ଫକୀରମୋହନ ପୁଣି ପ୍ରଥମେ ଦେଖାଇଥିଲେ ଓଡ଼ିଆ ଭାଷାରେ ଓଡ଼ିଆର ଜାତୀୟ ସାହିତ୍ୟ ସୃଷ୍ଟି କରିବାକୁ ହେଲେ ଓଡ଼ିଶା ମାଟିର କଥାବସ୍ତୁ । ଓଡ଼ିଆ ପ୍ରାଣର ହସ କାନ୍ଦ ନେଇ ଗାଁ ଦାଣ୍ଡର ଭାଷାରେ ଜୀବନ୍ତ ସାହିତ୍ୟ ରଚନା କରିବାକୁ ପଡ଼ିବ । ଯଥାର୍ଥରେ କହିବାକୁ ଗଲେ ଓଡ଼ିଆ ଜାତୀୟ ସାହିତ୍ୟର ଜନକ ହେଉଛନ୍ତି ଫକୀରମୋହନ ।" (୧)

ଦୀର୍ଘ ଅର୍ଦ୍ଧଶତାବ୍ଦୀ କାଳ (୧୮୪୩–୧୯୧୮) ଓଡ଼ିଆ ସାହିତ୍ୟର ଯଥାର୍ଥ ସେନାପତି ଫକୀରମୋହନ ସ୍ୱୀୟ ଅଧ୍ୟବସାୟ ଓ ସାଧନା ଦ୍ୱାରା ଓଡ଼ିଆ ସାହିତ୍ୟର ଗଳ୍ପ, ପ୍ରବନ୍ଧ, କାବ୍ୟ, କବିତା ଓ ଅନୁବାଦ ପ୍ରଭୃତି କ୍ଷେତ୍ରରେ ନିଜର ପାରଦର୍ଶୀତା ପ୍ରଦର୍ଶନ କରିଯାଇଛନ୍ତି । ଅଧୁନା ଫକୀରମୋହନଙ୍କ କ୍ଷୁଦ୍ରଗଳ୍ପ ସମ୍ବନ୍ଧରେ ଆଲୋକପାତ କରାଯାଉ ।

ଫକୀରମୋହନଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ କ୍ଷୁଦ୍ରଗଳ୍ପ ନଥିଲା କହିଲେ ଚଳେ । ଲୋକମୁଖରେ ପ୍ରଚଳିତ କିମ୍ବଦନ୍ତୀ, ପୌରାଣିକ ଉପାଖ୍ୟାନ ଓ ରାଜାରାଣୀ କଥା ଇତ୍ୟାଦି କ୍ଷୁଦ୍ରଗଳ୍ପର ସ୍ଥାନ ଗ୍ରହଣ କରିଥିଲା । ମାତ୍ର ଫକୀରମୋହନ ସର୍ବପ୍ରଥମେ କୋଡ଼ିଏ ଗୋଟି କ୍ଷୁଦ୍ରଗଳ୍ପ ରଚନା କରି ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପର ଜନକ ରୂପେ ବିବେଚିତ ହୁଅନ୍ତି । ସାରଳା ଦାସ ଯେପରି ଭାବେ ଓଡ଼ିଆ ସାହିତ୍ୟର ଜନକ ଭାବେ ସ୍ୱୀକୃତ ଠିକ୍ ସେହିପରି ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପର ଜନକ ଭାବେ ଫକୀରମୋହନ ନିଶ୍ଚିତ ଭାବରେ ସ୍ୱୀକାରଯୋଗ୍ୟ । "ଫକୀରମୋହନଙ୍କ ପୂର୍ବରୁ ବାସ୍ତବରେ ଓଡ଼ିଆ ଜାତି ମନଖୋଲି ହସି ଶିଖିନଥିଲା । ସର୍ବପ୍ରଥମେ ସେ ଏ ଜାତିକୁ ହୃଦୟଖୋଲା ହସ ଶିଖାଇଲେ । କେବଳ ଏଇଥି ପାଇଁ ନୁହେଁ, ଫକୀରମୋହନ ମୋହନୀୟ ପ୍ରତିଭାର ମୁଖ୍ୟ ଦିଗ ହେଲା ତାଙ୍କ କଥାଶିଳ୍ପର ଉପାଦାନ ଆହରଣ । ସେନାପତି ତାଙ୍କ ଗଳ୍ପ ଉପନ୍ୟାସର ମାନବିକ ଉପାଦାନ ସବୁ ସଂଗ୍ରହ କରିଥିଲେ । ସମାଜର ବାତ୍ୟା, ବିକ୍ଷୋଭିତ ରାଜପଥ ଧାରର ଅତି ନଗଣ୍ୟ, ପତିତ ଜନ ଜୀବନରୁ । ସମଗ୍ର ଉତ୍କଳୀୟ ସାହିତ୍ୟରେ ଫକୀରମୋହନଙ୍କ କୃତିର ଏଇ ଦିଗଟି ନୂତନତାର ଦିଗ୍‌ଦର୍ଶନ ଯେ କରାଇଛି ଏଥିରେ ସନ୍ଦେହର ଅବକାଶ ନାହିଁ ।" (୨)

ଫକୀରମୋହନ ପରିଣତ ବୟସରେ ଅର୍ଥାତ୍ ପ୍ରାୟ ୫୦ ବର୍ଷ ବୟସରେ ଗଳ୍ପ ରଚନାରେ ବ୍ରତୀ ହୋଇଥିଲେ । ବ୍ୟକ୍ତିଗତ ଜୀବନରେ ଏକ ଶିକ୍ଷକ ଏବଂ ପ୍ରଶାସକ (ବିଭିନ୍ନ ରାଜ ଦରବାରର ଦେବାନ୍) ଥିଲେ । ତେଣୁ ମାନବ ଚରିତ୍ରକୁ ଉତ୍ତମ ରୂପେ ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ । ତେଣୁ ମାନବ ଚରିତ୍ର ସମ୍ପର୍କରେ ତାଙ୍କର ବିପୁଳ ଅଭିଜ୍ଞତା ହିଁ କ୍ଷୁଦ୍ର ଗଳ୍ପଗୁଡ଼ିକରେ ପ୍ରତିଫଳିତ ହୋଇ ଏହାକୁ ରସୋତ୍ତୀର୍ଣ୍ଣ କରିପାରିଛି । ଚରିତ୍ର ଆହରଣର କୌଶଳ, ବାସ୍ତବ ଅନୁଭୂତିମୂଳକ ଅର୍ନ୍ତଦୃଷ୍ଟିର ବ୍ୟବହାର, ହାସ୍ୟରସର ଅବତାରଣା, ଆଦର୍ଶବାଦ, ସମାଜରେ ସଂସ୍କାର ଆଣିବାର ପ୍ରଚେଷ୍ଟା ଓ ଚରିତ୍ରମାନଙ୍କର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଦୃଷ୍ଟିରୁ ଫକୀରମୋହନଙ୍କ କ୍ଷୁଦ୍ରଗଳ୍ପଗୁଡ଼ିକ ଏକ ସ୍ୱତନ୍ତ୍ର ସ୍ଥାନ ଦାବୀ କରନ୍ତି । "ଗଳ୍ପସଳ୍ପ ତାଙ୍କର ଏକମାତ୍ର ଗଳ୍ପ ପୁସ୍ତକ । ମାତ୍ର ଏଥିରେ ସଙ୍କଳିତ "ରେବତୀ", "ପେଟେଣ୍ଟ ମେଡ଼ିସିନ୍", "ରାଣ୍ଡିପୁଅ ଅନନ୍ତା" ଭଳି ଗଳ୍ପ ଭାରତୀୟ ସାହିତ୍ୟରେ ମଧ୍ୟ ଦୁର୍ଲଭ । ତାଙ୍କର "ସଭ୍ୟ ଜମିଦାର", "ବୀରେଇ ବିଶ୍ୱାଳ", "ଅଧର୍ମବିତ୍ତ", "ଡାକମୁନ୍‌ସୀ" ପ୍ରଭୃତି କେବଳ ରସୋତ୍ତୀର୍ଣ୍ଣ ନୁହଁନ୍ତି । ସମୟ ଓ ସମାଜର ପ୍ରଚଣ୍ଡ ପ୍ରତିଧ୍ୱନୀ । ଅପୂର୍ବ ସଂବେଦନଶୀଳତା, ମାନବଧର୍ମୀ ଅନୁଚିନ୍ତା ଏବଂ ସମାଜ ସଚେତନତାର ଆଲେଖ୍ୟ ବହନ କରି ତାଙ୍କର ଗଳ୍ପ ଓ ଉପନ୍ୟାସ ଅତ୍ୟନ୍ତ ଜୀବନ୍ତ ଓ ସାର୍ଥକ ।" (୩)

ଲୀଳା ପାଇଁ ସୁଭଦ୍ରା ଦ୍ୱାପରେ କୃଷ୍ଣଭଗ୍ନୀ ।
ସଂଯୋଗବଶତଃ ଦେବୀ ଅର୍ଜୁନଙ୍କ ପତ୍ନୀ ॥ ୬ ॥
ସ୍ତ୍ରୀ ମୂଳଭୂତା ଆଦ୍ୟାଶକ୍ତି ସନାତନୀ ।
ଯୋଗ ମାୟାକ୍ଷର ତତ୍ତ୍ୱ କାମ୍ପିଲ୍ୟ ବାସିନୀ ॥ ୭ ॥
ପଦ୍ମଯୋନି ରୂପେ ନାରୀ ପୁରୁଷ ପ୍ରତୀକ ।
ବ୍ରହ୍ମ ଜୀବ ମଧ୍ୟବର୍ତ୍ତୀ ଶକ୍ତି ଜାଗତିକ ॥ ୮ ॥
ଶୁକ୍ଳ ବଳଦେବ ଦିନ, ଜଗନ୍ନାଥ ରାତ୍ରୀ ।
ସଂଯୋଜିକା ସନ୍ଧ୍ୟା ଭଦ୍ରାଦେବୀ ଆଦ୍ୟାଶକ୍ତି ॥ ୯ ॥
ଜୀବ ଚୈତନ୍ୟ, 'ସାଧକ' ରେବତୀ ରମଣ ।
ସୁଭଦ୍ରା 'ସାଧନା', 'ସାଧ୍ୟ' ଜଗନ୍ନାଥ ବ୍ରହ୍ମ ॥ ୧୦ ॥

ବିଷ୍ଣୁପତ୍ନୀ ଲକ୍ଷ୍ମୀ, ଶିବା ଶିବ ଅର୍ଦ୍ଧାଙ୍ଗିନୀ ।
ବ୍ରାହ୍ମଣୀ ସାବିତ୍ରୀ, ମୁଖାଶ୍ରିତା ପଦ୍ମଯୋନି ॥ ୧୧ ॥
ଜଗତ ଓ ଜଗନ୍ନାଥ ମଧ୍ୟେ ଗୁହ୍ୟା ରୂପା ।
କର ପାଦାଦି ରହିତା ଗୋପନ ସ୍ୱରୂପା ॥ ୧୨ ॥
ବିଶ୍ୱ ପ୍ରସବିନୀ ଆଦ୍ୟାଶକ୍ତି ଜ୍ଞାନାତୀତ ।
ବିବିଧ ରୂପରେ ଦେବୀ ଖ୍ୟାତ, ପ୍ରତିଭାତ ॥ ୧୩ ॥
ସୁଭଦ୍ରାଙ୍କଠାରୁ ନାରୀ ଜଗତ ସମ୍ଭୂତ ।
ପୁରୁଷ ସକଳ ଜଗନ୍ନାଥ ଅଂଶୁଜାତ ॥ ୧୪ ॥

**ନିର୍ଝରୀ ଷଡ଼ଙ୍ଗୀ**
**ସିଭିଲ୍ ଡିଭିଜନ୍, କାଳିଆପାଣି, ଯାଜପୁର ।**




ରୋଟାରୀ କ୍ଲବ ଆନୁକୂଲ୍ୟରେ ଭୁବନେଶ୍ୱରଠାରେ ଆୟୋଜିତ ଏକ ଉତ୍ସବରେ ସାଧାରଣ ଅଭିଯୋଗ ଓ ପେନସନ ମନ୍ତ୍ରୀ ଶ୍ରୀ ପ୍ରସନ୍ନ ପାଟଶାଣୀ ଅନ୍ଧ ବିଦ୍ୟାଳୟ ଓ ମୂକ ଓ ବଧିର ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କୁ ପୁରସ୍କାର ପ୍ରଦାନ କରୁଛନ୍ତି ।

# ବିଶ୍ୱ ମାନବ ବିଶ୍ୱେଶ୍ୱରାୟ

* ଇଂ କୋଦଣ୍ଡ ପାଣିଗ୍ରାହୀ

ଆଜି ଆମେ ଏକବିଂଶ ଶତାବ୍ଦୀର ପାଦ ଦେଶରେ । ଗତ କେତେ ଦଶନ୍ଧି ମଧ୍ୟରେ ବିଜ୍ଞାନର ଯେଉଁ ଦ୍ରୁତ ଅଗ୍ରଗତି ହୋଇଛି ଏବଂ ପରିଣାମ ରୂପେ ଯେଉଁ ଜ୍ଞାନର ଭଣ୍ଡାର ଉନ୍ମୁକ୍ତ ହୋଇଛି, ଜଣାପଡୁଛି ଯେପରି ଜ୍ଞାନର ବିସ୍ଫୋରଣ ଘଟିଛି । ଏହି ପରିପ୍ରେକ୍ଷୀରେ ବିଜ୍ଞାନକ୍ଷେତ୍ରରେ ଭାରତର ଭୂମିକା ବା ଅବଦାନ ଅନୁଧ୍ୟାନ କଲେ ଜଣା ଯିବ ଯେପରି ଆମେ ପ୍ରାୟ ଏକ ଶତାବ୍ଦୀ ପଛରେ ପଡ଼ିଯାଇଛୁ । ବିଂଶ ଶତାବ୍ଦୀରେ ଆମର ବୈଜ୍ଞାନିକ ଜ୍ଞାନ ତଥା ଗବେଷଣା ଓ ଉନ୍ନୟନରେ ଅନ୍ୟ ପାଶ୍ଚାତ୍ୟ ଦେଶମାନଙ୍କ ସହ ସମକକ୍ଷ ଥିବା ସତ୍ତ୍ୱେ ପରେ ପରେ ଦେଖାଦେଲା ଛାଣୁତ୍ୱ ଏବଂ ଏହି ଛାଣୁତ୍ୱ ମଧ୍ୟରୁ ହିଁ ଯେଉଁ କେତେକ ମୁଷ୍ଟିମେୟ ଯୋଗ୍ୟ ଭାରତୀୟ ବିଶ୍ୱରେ ନିଜର ପରାକାଷ୍ଠା ପ୍ରଦର୍ଶନ କରିପାରିଛନ୍ତି ସେମାନଙ୍କ ମଧ୍ୟରୁ ପଦାର୍ଥ ବିଜ୍ଞାନରେ ସାର ସି: ଭି: ରମଣ, ଜଗଦୀଶ ଚନ୍ଦ୍ର ବୋଷ, ହରଗୋବିନ୍ଦ ଖୁରାନା ଏବଂ ଇଞ୍ଜିନିୟରିଂ ଓ ପ୍ରଯୁକ୍ତି ବିଦ୍ୟାରେ ମୁଡି ଗୁଣ୍ଡମ ବିଶ୍ୱେଶ୍ୱରାୟ ଅନ୍ୟତମ ।

ଆଜି ଶ୍ରୀ ବିଶ୍ୱେଶ୍ୱରାୟଙ୍କ ଜୟନ୍ତୀ ଦିବସ । ବିଶ୍ୱେଶ୍ୱରାୟଙ୍କ ଶୁଭ ଆବିର୍ଭାବ ହୋଇଥିଲା ୧୮୬୧ ମସିହା ସେପ୍ଟେମ୍ବର ୧୫ ତାରିଖରେ କର୍ଣ୍ଣାଟକର କୋଲାର ଜିଲ୍ଲା ଅନ୍ତର୍ଗତ ମୁଦେନହାଲି ଗ୍ରାମର ଏକ ଦରିଦ୍ର ବ୍ରାହ୍ମଣ ପରିବାରରେ । ବାଙ୍ଗାଲୋର ସେଣ୍ଟ୍ରାଲ କଲେଜ ପରେ ୧୮୮୩ ମସିହାରେ ବମ୍ବେ ବିଶ୍ୱବିଦ୍ୟାଳୟରୁ ପ୍ରଥମସ୍ଥାନରେ ଯାନ୍ତ୍ରୀକ ସ୍ନାତକ ରୂପେ ଉତ୍ତୀର୍ଣ୍ଣ ହୋଇ ୧୮୮୪ରେ ବମ୍ବେ ପୂର୍ତ୍ତ ବିଭାଗରେ ସହକାରୀ ଯନ୍ତ୍ରୀ ରୂପେ କାର୍ଯ୍ୟରେ ଯୋଗଦାନ କଲେ । କିଛି ଦିନ ପରେ ସିନ୍ଧୁ ନଦୀରେ ବ୍ୟାରେଜ ନିର୍ମାଣ ଦାୟିତ୍ୱ ହାତକୁ ନେଇ ସୁଦକ୍ଷ ରୂପେ ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ସମ୍ପୂର୍ଣ୍ଣ କରି ପ୍ରତିପାଦିତ କରିଥିଲେ ନିଜର କର୍ତ୍ତବ୍ୟନିଷ୍ଠା ଏବଂ ଉଚ୍ଚ ପ୍ରଶଂସିତ ହୋଇ ପଦସ୍ଥ ଇଞ୍ଜିନିୟର ପଦବୀକୁ ସଙ୍ଗେ ସଙ୍ଗେ ଉନ୍ନୀତ ହୋଇଥିଲେ ।

ପୁନା ଜଳସେଚନ ଓ ଜାତୀୟ ଜଳସେଚନ ମାଷ୍ଟର ପ୍ଲାନ ପ୍ରସ୍ତୁତି, ଓଡ଼ିଶାର ହୀରାକୁଦ ନଦୀ ବନ୍ଧ ଯୋଜନା ତାଙ୍କର ମାନସ ସନ୍ତାନ ।

ମାତ୍ର ୨୩ ବର୍ଷ ପରେ ଚାକିରିରୁ ସ୍ୱତଃ ଅବସର ନେଇ ଅଧିକ ଅଭିଜ୍ଞତା ପାଇଁ ପାଶ୍ଚାତ୍ୟ ଦେଶ ପରିଭ୍ରମଣରେ ଯାଇଥିଲେ । ସେଠାରୁ ଫେରିବା ପରେ ହାଇଦ୍ରାବାଦରେ ମୁଖ୍ୟ ଯନ୍ତ୍ରୀ ରୂପେ ଯୋଗଦାନ କଲେ ଏବଂ ହାଇଦ୍ରାବାଦ, ସିକନ୍ଦରାବାଦ ବନ୍ୟା ନିୟନ୍ତ୍ରଣ କାର୍ଯ୍ୟ ଓ ସ୍ୱେରେଜ ନିର୍ମାଣ ଦାୟିତ୍ୱ ନେଇଥିଲେ । ତା'ପରେ ମହୀଶୂର ଚିଫ୍ ଇଞ୍ଜିନିୟର ପଦ ଗ୍ରହଣ କରି ଭାରତର ପ୍ରଥମ ନଦୀବନ୍ଧ ଯୋଜନା କୃଷ୍ଣାରାଜ ସାଗର ନିର୍ମାଣ କରିଥିଲେ ।

କେବଳ ନିର୍ମାଣ ବ୍ୟତୀତ ଶିଳ୍ପ ତଥା ସାହିତ୍ୟ କ୍ଷେତ୍ରରେ ତାଙ୍କର ଚିନ୍ତାଧାରା ଥିଲା ଅତୁଳନୀୟ । ଭଦ୍ରାବତୀ ଇସ୍ପାତ୍ କାରଖାନା ଓ ଅନ୍ୟାନ୍ୟ ଛୋଟ ବଡ଼ ଶିଳ୍ପ ପ୍ରତିଷ୍ଠା ସହିତ ୧୯୧୩ରେ ମହୀଶୂରରେ ଏକ ବ୍ୟାଙ୍କ ପ୍ରତିଷ୍ଠା, ବାଙ୍ଗାଲୋର ପବ୍ଲିକ ଲାଇବ୍ରେରୀ, କନ୍ନଡ଼ ସାହିତ୍ୟ ପରିଷଦ ଓ ଏକ ଇଞ୍ଜିନିୟରିଂ କଲେଜ ସଂସ୍ଥାପନା କରିଥିଲେ । ଏତଦ୍ ବ୍ୟତୀତ ସେ ଭାରତୀୟ ବିଜ୍ଞାନ କଂଗ୍ରେସର ଅଧ୍ୟକ୍ଷ, ବମ୍ବେ ବୈଷୟିକ ଶିକ୍ଷାର ଅଧ୍ୟକ୍ଷ ଓ ଟାଟା ଲୌହ ଇସ୍ପାତ୍ କମ୍ପାନୀ ଲିମିଟେଡ଼ର ନିର୍ଦ୍ଦେଶକ ପଦରେ ଅଧିଷ୍ଠିତ ହୋଇଥିଲେ । ଭାରତୀୟଶିଳ୍ପୋଦ୍ୟୋଗୀସଙ୍ଘ ପ୍ରତିଷ୍ଠା ଓ ୧୯୫୪ରୁ ୧୯୫୮ ପର୍ଯ୍ୟନ୍ତ ଏହାର ସଭାପତି ଦାୟିତ୍ୱ ପରିଚାଳନା । ବାଙ୍ଗାଲୋର ବୃନ୍ଦାବନ ଉଦ୍ୟାନ ତାଙ୍କର ଅନବଦ୍ୟ ସୃଷ୍ଟି ।

ସେହି ବହୁମୁଖୀ ପ୍ରତିଭା ୧୯୫୫ରେ ଭାରତ ରତ୍ନରେ ଭୂଷିତ ହୋଇଥିଲେ । ୧୯୬୨ ଏପ୍ରିଲ ୧୪ରେ ତାଙ୍କ କର୍ମମୟ ଜୀବନର ଅବସାନ ଘଟିଛି । ତାଙ୍କର କର୍ମନିଷ୍ଠା, ବୁଦ୍ଧିମତ୍ତା ଏବଂ ସାମାଜିକ ବ୍ୟକ୍ତିତ୍ୱ ଆସମାନଙ୍କ ପ୍ରେରଣାର ଉତ୍ସ ହେଉ ।

---

ବ୍ରହ୍ମପୁର ।

ଊନବିଂଶ ଶତାବ୍ଦୀର ଓଡ଼ିଶାର ତତ୍କାଳୀନ ସାମାଜିକ ଚିତ୍ର ହିଁ ଫକୀରମୋହନଙ୍କ ଗଳ୍ପଗୁଡ଼ିକର ଭିତ୍ତିଭୂମି ସମାଜରେ ଏକ ଆମୂଳଚୂଳ ପରିବର୍ତ୍ତନ ଆନୟନର ଲକ୍ଷ୍ୟ ନେଇ ସେ ଗଳ୍ପ ରଚନା କରିଥିଲେ । ସେ ସମୟରେ ନାରୀଶିକ୍ଷା ପ୍ରତି ସମାଜର ଘୃଣା, ତଥାକଥିତ ନବ୍ୟ ଶିକ୍ଷିତ ଯୁବକମାନଙ୍କର ପାଶ୍ଚାତ୍ୟ ଶିକ୍ଷା ଓ ସଂସ୍କୃତିର ଅନ୍ଧାନୁକରଣ, ଧର୍ମ ନାମରେ ସରଳ ଜନତାଙ୍କୁ ଠକାମୀ, ମାନବିକତା ଶୂନ୍ୟ କନ୍ୟାସୁନା ପ୍ରଥା ଓ ସାମାଜିକ କୁସଂସ୍କାର ପ୍ରଭୃତିକୁ ଫକୀରମୋହନ ତାଙ୍କ ଗଳ୍ପରେ ଅତ୍ୟନ୍ତ ଚିତ୍ତାକର୍ଷକ ଭାବେ ବର୍ଣ୍ଣନା କରି ଏ ସମସ୍ତ ସାମାଜିକ ବ୍ୟାଧିର ମୂଳୋତ୍ପାଟନ ପାଇଁ ଉଦ୍ୟମ କରିଛନ୍ତି ।

ପ୍ରଥମ ଓଡ଼ିଆ କ୍ଷୁଦ୍ରଗଳ୍ପ ଭାବେ ଫକୀରମୋହନଙ୍କ 'ରେବତୀ' (ପ୍ରକାଶକାଳ ୧୮୯୮) ବିବେଚିତ ହୋଇଥାଏ । ଅବଶ୍ୟ ଏହା ପୂର୍ବରୁ ରାଧାନାଥଙ୍କ 'ଇତାଲୀୟ ଯୁବା', ମଧୁସୂଦନଙ୍କ 'ପ୍ରଣୟର ଅଦ୍ଭୁତ ପରିଣାମ' ଓ 'ହେମମାଳା' ଇତ୍ୟାଦି ରଚିତ ହୋଇଥିଲେ ହେଁ ଏଗୁଡ଼ିକ କ୍ଷୁଦ୍ରଗଳ୍ପର ମର୍ଯ୍ୟାଦା ଲାଭ କରିପାରି ନାହାଁନ୍ତି । 'ରେବତୀ' ଗଳ୍ପରେ ସ୍ତ୍ରୀ ଶିକ୍ଷାପ୍ରତି ସେ ସମୟର ଜନସାଧାରଣଙ୍କର କି ପ୍ରକାର ଆଭିମୁଖ୍ୟ ଥିଲା ତାହାହିଁ ପ୍ରତିପାଦନ କରିଛନ୍ତି ।

'ପେଟେଣ୍ଟ ମେଡ଼ିସିନ୍' ଫକୀରମୋହନଙ୍କ ଅନ୍ୟ ଏକ ସାର୍ଥକ ସୃଷ୍ଟି । ସାନ୍ତାଣୀ ସୁଲୋଚନା ଦେବୀ ନିଜର ଅକ୍ଳାନ୍ତ ପରିଶ୍ରମ ଦ୍ୱାରା କିପରି ମଦ୍ୟପ ସ୍ୱାମୀ ଚନ୍ଦ୍ରମଣି ପଟ୍ଟନାୟକଙ୍କୁ ସୁବାଟକୁ ଆଣି ପାରୁଛନ୍ତି, ତାହାହିଁ ଗଳ୍ପର ପ୍ରଧାନ ଉପଜୀବ୍ୟ ବିଷୟବସ୍ତୁ ।

'ଡାକମୁନ୍‌ସୀ' ଓ 'ସଭ୍ୟ ଜମିଦାର' ଗଳ୍ପ ଦ୍ୱୟରେ ଲେଖକ ଇଂରେଜ ଶିକ୍ଷା ଓ ସଭ୍ୟତାର ଅନ୍ଧାନୁକରଣ କରି ନବ୍ୟଶିକ୍ଷିତ ଯୁବକ ଯଥା ବାବୁ ଗୋପାଳଚନ୍ଦ୍ର ଓ ରାଜୀବଲୋଚନଙ୍କ ଅଧଃପତନର ସୂଚନା ଦେବା ସଙ୍ଗେ ସଙ୍ଗେ ଇଂରେଜ ସଭ୍ୟତା ଓ ସଂସ୍କୃତିର ଅନ୍ଧାନୁକରଣର ବିଷମୟ ପରିସ୍ଥିତି ସମ୍ପର୍କରେ ଚେତାବନୀ ଦେଇଛନ୍ତି ।

'ଧୂର୍ତ୍ତାମୂଷିକ ଭବ', 'ସୁନା ବୋହୂ', 'ପାଠୋଇ ବୋହୂ', 'ମାଧ ମହାନ୍ତିଙ୍କ କନ୍ୟା ସୁନା' ପ୍ରଭୃତି ଗଳ୍ପର ଆଙ୍ଗିକ ଓ ଆସିକ ପରିପ୍ରକାଶରେ ଏକ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ । (୪)

'ବାଲେଶ୍ୱରୀ ଗାହାକାନୀ', 'କାଳିକା ପ୍ରସାଦ ଗୋରାପ', 'କାଳିକା ପ୍ରସାଦ ଗୋରାପ', 'ବାଲେଶ୍ୱରୀ ପଙ୍ଗୀଲୁଣ'-ଏହି ତିନୋଟି ଗଳ୍ପ ଐତିହାସିକ କଥାବସ୍ତୁରେ ପରିପୂର୍ଣ୍ଣ ।

'ଗାଳ୍ପୀପୁଅ ଅନନ୍ତା', 'ଅଧର୍ମ ବିତ୍ତ', 'ବିରେଇ ବିଶ୍ୱାଳ' ପ୍ରଭୃତି ଗଳ୍ପର ବିଷୟବସ୍ତୁରେ ସେପରି କିଛି ନୂତନତ୍ୱ ନଥିଲେ ହେଁ ଏଗୁଡ଼ିକ ଉପାଦେୟ ଗଳ୍ପ ଅଟେ ।

'ଗୁଡ଼ିଆ ବାବା' ଗଳ୍ପରେ ଆମ ସମାଜରେ ଅନ୍ଧ ବିଶ୍ୱାସ ଓ ଧର୍ମର ପ୍ରଭାବରୁ ଭଣ୍ଡ ସନ୍ନ୍ୟାସୀମାନେ କିପରି ଲାଭ ଉଠାନ୍ତି, ତା'ର ପ୍ରମାଣ ମିଳିଛି ।



ଫକୀରମୋହନ ତାଙ୍କ ଗଳ୍ପଗୁଡ଼ିକରେ ଧନ୍ଦ୍ୱ ଓ ହାସ୍ୟରସ ପ୍ରୟୋଗ କରିଥିଲେ ମଧ ଗଳ୍ପଗୁଡ଼ିକରେ ସମାଜକୁ ଶିକ୍ଷାଦାନ ତଥା ସଂସ୍କାର ସାଧନ ପାଇଁ ଅଭିପ୍ରେତ ଥିଲା-ଏଥିରେ ଦ୍ୱିମତ ନାହିଁ । ଅତ୍ୟାଗ୍ରହୀ ସାହୁକାରର ଅତ୍ୟାଗ୍ରହ ଓ ଶୋଷଣ ଏବଂ ପରିଶେଷରେ ତା'ର ଭାଗ୍ୟର ବିପର୍ଯ୍ୟୟ । ଧର୍ମ ନାମରେ ଧୂଳିଆବାବାଙ୍କ ଶଠତା, ମଦ୍ୟପାନ ଓ ଦୁଶ୍ଚରିତ୍ରର ପରିଣାମ, କୁସଙ୍ଗରତ ସ୍ୱଳ୍ପ ଶିକ୍ଷା, ଜମିଦାର ପୁତ୍ର ଓ ସ୍ୱଳ୍ପଶିକ୍ଷାଭିମାନୀ ଜମିଦାର ବଧୂଙ୍କର ଦୁର୍ଭାଗ୍ୟ ଇତ୍ୟାଦି ତାଙ୍କ ଗଳ୍ପଗୁଡ଼ିକରେ ବହୁ ଶିକ୍ଷଣୀୟ ତଥା ଲୋକହିତକର ଉପାଦାନ ରହିଅଛି । ମୋଟ୍‌ଉପରେ କହିବାକୁ ଗଲେ, ଫକୀରମୋହନଙ୍କ ଗଳ୍ପଗୁଡ଼ିକର ଆଦର୍ଶବାଦ ଏବଂ ବାସ୍ତବବାଦର ଏକ ସୁନ୍ଦର ସମନ୍ୱୟ ହୋଇପାରିଛି ।

ଚରିତ୍ର ସୃଷ୍ଟିରେ ଫକୀରମୋହନ ସମସ୍ତଙ୍କୁ ଟପିଯାଇଥିବାର ମନେହୁଏ । ରାଧାନାଥ, ଉପେନ୍ଦ୍ରଭଞ୍ଜ ବା ମଧୁସୂଦନଙ୍କ ପରି ରାଜକୁମାର ବା ରାଜକୁମାରୀ ତାଙ୍କ ଗଳ୍ପର ନାୟକ ବା ନାୟିକା ହୋଇ ନାହାଁନ୍ତି । ଏହା ପରିବର୍ତ୍ତେ ଆମେ ତାଙ୍କର କ୍ଷୁଦ୍ରଗଳ୍ପରେ ରେବତୀ, ଶ୍ୟାମବନ୍ଧୁ ମହାନ୍ତି, ଗୋପାଳ, ଅନନ୍ତା, ମାଧ ମହାନ୍ତି, ବିରେଇ, ହରି ସିଂହ, କୁବେର ସାହୁ, ସୁବଳ ମହାକୁଡ଼, ନିମା ଦେଇ, ପଦୀ, ଖୁଣ୍ଟୀ, ମାଳତୀ, କିଶା ଭଣ୍ଡାରୀ, ରାମା ବାରିକ, ଚୌକିଆ ବିଦିଆ ପାଣ, ସୁପ୍ରା, ଚେମୀ, ଅର୍ଜୁନା ଇତ୍ୟାଦି ବହୁ ଚରିତ୍ରକୁ ଆମେ ଦେଖିବାକୁ ପାଉ । ଏମାନେ ଫକୀରମୋହନଙ୍କ ଯୋଗୁଁ ଅମରତ୍ୱ ଲାଭ କରିଛନ୍ତି । ସେମାନଙ୍କ ହସ-କାନ୍ଦ, ପ୍ରେମ-ମିଳନ, ସୌନ୍ଦର୍ଯ୍ୟ-ପ୍ରତାରଣା, ଲୋଭ-ଆତ୍ମତ୍ୟାଗ ଇତ୍ୟାଦି ଦୁଇପିଠିଆ ପ୍ରାତ୍ୟହିକ ବିଷୟଗୁଡ଼ିକ ଫକୀରମୋହନଙ୍କ ନିପୁଣ ଲେଖନୀ ଆଶ୍ଚର୍ଯ୍ୟ ଦକ୍ଷତାର ସହ ଚିତ୍ର କରିଛି ।

କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ ରଚନା କ୍ଷେତ୍ରରେ ତାଙ୍କର ଭାଷା ଓ ଶୈଳୀ ବହୁ ସାହିତ୍ୟ ସାଧକଙ୍କୁ ଅନୁପ୍ରାଣିତ କରିଛି । ଏକଥା ନିଃସନ୍ଦେହରେ ବ୍ୟକ୍ତ କରାଯାଇପାରେ ଯେ ଫକୀରମୋହନଙ୍କ ସାହିତ୍ୟକୃତୀ ଦ୍ୱାରା ଏ ଯୁଗର ବହୁ କଥାକାର ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ପ୍ରଭାବିତ ହୋଇଛନ୍ତି । ଏଭଳି ଅସାଧାରଣ କୃତିତ୍ୱ ପାଇଁ ସେ ସକଳ ବିଶ୍ୱରବନ୍ତ ସମୀକ୍ଷକମାନଙ୍କ ପ୍ରଣତିଭାଜନ ।

---

ପାଦଟୀକା :

(୧) ସୁରେନ୍ଦ୍ର ମହାନ୍ତି, 'ଫକୀର ମୋହନ ସମୀକ୍ଷା'-ପୃଷ୍ଠା ୨

(୨) ରତାକର ଚଇନି, 'ମୋ ଆଖିର ମୂଳ'-ପୃଷ୍ଠା ୧୧୫

(୩) ପଠାଣି ପଟ୍ଟନାୟକ, 'ଓଡ଼ିଆ ସାହିତ୍ୟର ଇତିହାସ'-ପୃଷ୍ଠା ୪୪୧

(୪) ଦେବେନ୍ଦ୍ର ମହାନ୍ତି, 'ଆଧୁନିକ ଓଡ଼ିଆ ସାହିତ୍ୟ ଦିଗ୍‌ଦର୍ଶନ'-ପୃଷ୍ଠା ୮୪

---

ଆଡ଼ିସିନାଲ୍ ଟ୍ରେଜେରୀ ଅଫିସର,
ସ୍ପେଶାଲ୍ ଟ୍ରେଜେରୀ ନଂ ୧,
ଭୁବନେଶ୍ୱର-୭୫୧୦୦୧ ।

ଲେଖନୀ ମୁନରେ ଜାଗରଣ ସୃଷ୍ଟି କରେ । ସେଇ ଜାଗରଣ ପରିବର୍ତ୍ତନ ଆଣେ ।

ଯୋଡ଼ି ଯାଉରେ ଇଂରେଜ ଅମଳ
ହରି ନେଇଗଲା ଦେଶୁ ଟଙ୍କା ସୁନା
ଦେହରୁ ହରିଲା ଆମର ବଳ ॥

ଏହା ଥିଲା ଜାଗରଣର ପ୍ରତିଧ୍ୱନୀ । ଶୁକିରି ଭୟରେ ଯେଉଁମାନେ ସରକାରଙ୍କଠାରେ ମୁଣ୍ଡ ନୁଆଁଇ ଥିଲେ ସେମାନଙ୍କୁ ମଧ୍ୟ ତାଚ୍ଛଲ୍ୟ କରି ଲେଖିଛନ୍ତି ।

କବି ଥିଲେ ଓଡ଼ିଆ ଯାତ୍ରାର ସଂସ୍କାରକ । ଗୀତାଭିନୟ ଯୁଗର ପ୍ରବର୍ତ୍ତକ । ଗଣ ଭାଷାର ବିଦ୍‌ଗଧ ପୂଜକ । ଲୋକ ଚରିତ୍ରର ସ୍ନିଗ୍ଧ ସୁନ୍ଦର ରୂପକାର । ଓଡ଼ିଆ ଯାତ୍ରାର ସାରଥୀ । ରୁଚି ଓ ନୀତିର ବିପ୍ଳବର । କଳାକାରର ସ୍ୱାଭିମାନରେ ଉଦ୍ଦୀପ୍ତ । ତାଙ୍କର ଶେଷ ଜୀବନ ଥିଲା କାରୁଣ୍ୟାତ୍ମକ । ଜୀବନକୁ ସଂସାରର ତାଳେ ତାଳେ ଅତିବାହିତ କରିବା ତାଙ୍କ ପାଇଁ ହେଲା କଷ୍ଟସାଧ୍ୟ । ସରକାରୀ ସାହାଯ୍ୟ ପାଇଁ ଭିକ୍ଷା କରିଛନ୍ତି ।

ପାଣିର ଗୁହାରି ପାଣିରେ ଭାସିଲା
ବାଣୀ ସେବା କରି କରି
ପାଶୋରି ନଦିଅ କିଶୋରୀ ବଲ୍ଲଭ
ଜୟ ନୀଳାଦ୍ରୀ ବିହାରି ।

ଏହାହିଁ ଗଣକବି ବୈଷ୍ଣବ ପାଣିଙ୍କର ହୃଦୟର ବେଦନାର ଅଭିବ୍ୟକ୍ତି । ଓଡ଼ିଆ ଯାତ୍ରା–ନନ୍ଦିଘୋଷ–ସାରଥିଙ୍କର ଏହିି କରୁଣ ଜୀବନର ପରିଚୟ ।

ମାହାଙ୍ଗା ପଞ୍ଚାୟତ ସମିତି,
ଗ୍ରା:ପୋ:–କୁଆଁପାଳ, ଜି:–କଟକ ।



# ଓଡ଼ିଆ ସାହିତ୍ୟରେ ଗଣକବି ବୈଷ୍ଣବ ପାଣି

* ଶ୍ରୀ କିଶୋର ଚନ୍ଦ୍ର ସିଂହ

କୁମାର ପୂର୍ଣ୍ଣିମା ରାତି । ଏକ ଗରୀବ ବ୍ରାହ୍ମଣ ପରିବାରରେ ସୁଦର୍ଶନ ପାଣିଙ୍କ ଔରସରୁ ଓ ଶ୍ୟାମଦେବୀଙ୍କ ଗର୍ଭରୁ ଯେଉଁ ଶିଶୁଟି ଜୁଆଁ ଜୁଆଁ ରାବ ଦେଇ ଭୂମିଷ୍ଠ ହେଲା, ସେ ହେଉଛନ୍ତି ଓଡ଼ିଆ ସାହିତ୍ୟର ଗଣକବି ବୈଷ୍ଣବ ପାଣି । କଟକ ଜିଲ୍ଲା ମାହାଙ୍ଗା ଥାନା କୋଠପଦା ଗ୍ରାମ । ବିରୂପା ନଦୀର କୁଳୁ କୁଳୁ ନାଦ ଶାଗଳି ପରିବେଶକୁ ଆହୁରି ସୁମଧୁର କରେ । ଏଇ ଗାଁରେ ଜନ୍ମ, କର୍ମ ଓ ମୃତ୍ୟୁ ଥିଲା ବୈଷ୍ଣବ ପାଣିଙ୍କର ।

କେବଳ ଯେ କବି ତାଙ୍କର ପରିଚୟ ତାହା ନୁହେଁ—ଜଣେ ବିଶିଷ୍ଟ ସଂସ୍କାରକ ।

କବି ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧର ସଚେତନ ସ୍ରଷ୍ଟା ଓ ସମନ୍ୱୟର ଯଥାର୍ଥ ବାର୍ତ୍ତାବହ । ଗାଁ ଜୀବନର ଛୋଟ ଆନନ୍ଦ ପ୍ରାପ୍ତ ତାଙ୍କର ଲେଖନୀ ପୁନ କେବଳ ଜାଗରଣ ସୃଷ୍ଟି କରି ନାହିଁ – ବରଂ ଜନତାର ହୃଦୟରେ ପ୍ରାଣର ସ୍ପନ୍ଦନ ସୃଷ୍ଟି କରିବା ଥିଲା ତାଙ୍କର ଲକ୍ଷ୍ୟ । ପୁରାଣ, ଇତିହାସ ଓ କିମ୍ବଦନ୍ତୀର ରସାତ୍ମକ ବର୍ଣ୍ଣନା ମାଧ୍ୟମରେ ସାହିତ୍ୟକୁ ଉଜ୍ଜୀବିତ କରିଛନ୍ତି । ତାଙ୍କର ଲକ୍ଷ୍ୟ ସ୍ଥିର ଓ ଅଚଳ ।

କବିଙ୍କର ସମସ୍ତ ନାଟକ ଲୋକ ସଂସ୍କୃତି ଅଭିମୁଖୀ । ଓଡ଼ିଶାର ନିଜସ୍ୱ ପଲ୍ଲୀ ଜୀବନର ପ୍ରତ୍ୟେକ ତାଙ୍କର ନାଟକ ଜୀବନ୍ତ ଆଲେଖ୍ୟ । ସେ ରଚନା କରିଥିଲେ ଐତିହାସିକ ଓ କିମ୍ବଦନ୍ତୀ ମୂଳକ ଗୀତାଭିନୟ । ଜାତୀୟତାବୋଧ ଓ ମାନବ ବନ୍ଦନା ଇତିହାସରେ ଅନୁଦ୍ଘାଟିତ ମାନବିକ ପ୍ରବୃତ୍ତି ଓ ଭକ୍ତି ଭାବନା ଏ ସବୁଥିରେ ରୂପାୟିତ । ନାଟ୍ୟକାର ସାମାଜିକ ଓ କାଳ୍ପନିକ ଗୀତାଭିନୟ ବିଷୟବସ୍ତୁକୁ ପ୍ରାଧାନ୍ୟ ଦେଇଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ "ଲାବଣ୍ୟବତୀ" କାବ୍ୟ ଅବଲମ୍ବନରେ "ଲାବଣ୍ୟବତୀ ଚନ୍ଦ୍ରଭାନୁ ପରିଣୟ", ରାଧାନାଥଙ୍କ "କେଦାର ଗୌରୀ" କାବ୍ୟ ଅବଲମ୍ବନରେ "କେଦାର ଗୌରୀ", "ଯଜାତି କେଶରୀ" କାବ୍ୟ ଅବଲମ୍ବନରେ "ଯଜାତି କେଶରୀ" ଓ ଫକୀରମୋହନଙ୍କ "ପେଟେଣ୍ଟ ମେଡ଼ିସିନ୍" ଗଳ୍ପ ଅବଲମ୍ବନରେ ସେ "ତାରାବାଇ ଫାର୍ସ" ରଚନା କରି ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି ।

କବିଙ୍କ ବ୍ୟକ୍ତିଗତ ଚରିତ୍ର ସମାଜ ଗର୍ହିତ । ତଥାପି ତାଙ୍କର ୧୯ ବର୍ଷ ବୟସରେ ବିନା ଗୁରୁରେ ହେଲେ ଜଣେ ବିଶିଷ୍ଟ ପାଲାକାର । ବିଦ୍ୟା ନାହିଁ, ଗୁରୁ ନାହିଁ, ଶାସ୍ତ୍ର ନାହିଁ, ଧନ ନାହିଁ, ଥିଲା କେବଳ ଶୂନ୍ୟ ଗୁରୁଙ୍କ ବାଣୀ ଓ ଗଭୀର ନିଷ୍ଠା । ତେଣୁ ସେ କହନ୍ତି –

ଯେବେ ସେ ଗୁରୁ ନ ହେଲା ଗୁରୁରେ, ଆରେ ବାଇଆ ମନ
ତୁ ତରୁଛୁ କାହିଁକି ମରୁଛୁ କାହିଁକି ଥରୁଛୁ କାହିଁକି ଡରୁରେ
ଗୁରୁ ବ୍ରହ୍ମା ବିଷ୍ଣୁ ଶିବରେ, ଆରେ ବାଇଆ ମନ ।
ହ୍ରୀଁ ବୀଜ ରୂପେ ସେ ଘଟେ ଘଟେ ରହି ବୁଝୁଛନ୍ତି
ଦାନୀ ଲା ଭରେ ।
ଯେଉଁ ମନ ତ ଘଟରେ ଅଛିରେ, ଆରେ ବାଇଆମନ ।

ବୈଷ୍ଣବ ପାଣି ମନକୁ ନିଜେ ଗୁରୁ କଲେ । ଶୂନ୍ୟଗୁରୁ ଇଚ୍ଛାକଲେ ତାଙ୍କର ସକଳ ଦୁଃଖ ଦୂରେଇ ଯିବ ଏହି ଶୂନ୍ୟ ଗୁରୁ ଭାବନା କବିତ୍ୱର ଉପାସନାକୁ ସମୃଦ୍ଧ କରିଛି ।

କବିଙ୍କ ସାହିତ୍ୟରେ ଥିଲା, ଶୃଙ୍ଗାର ରସ, ବୀର ରସ ଓ ସର୍ବୋପରି ପ୍ରତ୍ୟେକ ରସର ମିଳନ ପୀଠ । ଅକ୍ରୁର ଆସିଛି କୃଷ୍ଣଙ୍କୁ ନେବ ପରାକ୍ରମୀ କଂସର "ରାଜଦରବାରକୁ" ଭଗବାନଙ୍କୁ ରଥରେ ବସାଇ ଭକ୍ତିତ୍ୱର ପରାକାଷ୍ଠା ପ୍ରଦର୍ଶନ ହେବ । ମା' ଯଶୋଦାର ମାର୍ମିକ ବେଦନା । ଅକ୍ରୁରର କର୍ତ୍ତବ୍ୟ ନିଷ୍ଠା ପାଖରେ ହାର ମାନିଛି । ପୁତ୍ର ବିଦାୟରେ ଯେଉଁ ବାତ୍ସଲ୍ୟ ଭାବର ଚୂଡ଼ାନ୍ତ ପରିଚୟ ପ୍ରଦାନ କରିଛନ୍ତି, ତାହା ମାତୃ ହୃଦୟର ମର୍ମାନ୍ତିକ କରୁଣ ମୂର୍ଚ୍ଛନା ବ୍ୟତୀତ ଆଉ କିଛି ନୁହେଁ । କରୁଣ ରସ ସାହିତ୍ୟକୁ ଏକ ଶୀର୍ଷସ୍ଥାନ ପ୍ରଦାନ କରିଛି ।

"ଦୁଃଖୀଧନ ନୀଳମଣିରେ, ମା'ବୋଲି କିଏ ଡାକିବ ମୋତେ
ଗୋରୁଘେନି ଫେରି ଆସିଲା ବେଳକୁ କାହାପାଇଁ
ଜଗି ବସିବି ପଥେ ।

ବିଦେଶୀ ସରକାରଙ୍କ ଅତ୍ୟାଚାର ଓ ଲୁଣ୍ଠନରେ ଦେଶବାସୀ ଅତିଷ୍ଠ । ସ୍ୱଦେଶ ଚିନ୍ତା ଓ ସ୍ଥିତିକୁ ଭୁଲି ଯାଉଥିଲେ ଦେଶବାସୀ । ବିଭିନ୍ନ ସ୍ତରରେ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ପରାଧୀନ ଜୀବନକୁ ସେମାନେ ଶ୍ରେୟ ମଣୁଥିଲେ । କବି ତା'ର



ଭୁବନେଶ୍ୱରଠାରେ ରାଜ୍ୟ ମହିଳା କମିଶନ ଦ୍ୱାରା ଆୟୋଜିତ ଯୌତୁକ ପ୍ରଥା ଉଚ୍ଛେଦ ରାଜ୍ୟସ୍ତରୀୟ ପ୍ରତିଯୋଗିତାକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି । (୩/୧୦) ।



ରାୟଗଡ଼ାଠାରେ କାର୍ଯ୍ୟକାରୀ ହେବାକୁ ଯାଉଥିବା ୧ ଏମ୍ ବିଶିଷ୍ଟ ରପ୍ତାନୀ ଭିତ୍ତିକ ଆଲୁମିନିୟମ୍ ପ୍ରକଳ୍ପର ଅଗ୍ରଗତି ସମ୍ପର୍କରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ସମୀକ୍ଷା କରୁଛନ୍ତି (୬/୧୦) ।



ଗୋପାଳପୁର ବନ୍ଦରଠାରେ ଅନୁଷ୍ଠିତ "ତପୋଇ ଉତ୍ସବ ୧୯୯୩"ରେ ମୁଖ୍ୟ ଅତିଥି ଭାବେ ମାନ୍ୟବର ରାଜ୍ୟପାଳ ଶ୍ରୀ ବି: ସତ୍ୟନାରାୟଣ ରେଡ୍ଡୀଙ୍କ ଯୋଗଦାନ । (୨୬/୯)



ଭୁବନେଶ୍ୱରଠାରେ ଅନୁଷ୍ଠିତ ଅଷ୍ଟମ ରାଜ୍ୟସ୍ତରୀୟ କରାଟେ ପ୍ରତିଯୋଗିତାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ପ୍ରତିଯୋଗୀମାନଙ୍କୁ ପୁରସ୍କାର ପ୍ରଦାନ କରୁଛନ୍ତି (୨୪/୩) ।



ଭୁବନେଶ୍ୱରଠାରେ 'ମହିଳା କର୍ମ ନିଯୁକ୍ତି ଓ ଆଧୁନିକ ବୈଷୟିକ ଜ୍ଞାନ' ଶୀର୍ଷକ ଏକ ଆଲୋଚନା ଚକ୍ରକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି ।
(୫/୧୦)



ବାଲେଶ୍ୱର ଜିଲ୍ଲାର ଚଷାଖଣ୍ଡଠାରେ ଅନୁଷ୍ଠିତ ବାଘାଯତୀନ୍ ସ୍ମୃତି ଦିବସ ଅବସରରେ ଏକ ସାଧାରଣ ସଭାରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନାଙ୍କ ଉଦ୍‌ବୋଧନ (୧୦/୯) ।



ଟିଟିଲାଗଡ଼ଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ସରକାରୀ ମହିଳା ମହାବିଦ୍ୟାଳୟକୁ ଉଦ୍‌ଘାଟନ କରୁଛନ୍ତି (୨୪/୯)।




ବରପାଲୀ ସାଂସ୍କୃତିକ ସଂଘ 'କୁସାରୀ' ଆନୁକୂଲ୍ୟରେ ଆୟୋଜିତ ନୂଆଖାଇ ଭେଟ୍ ଉତ୍ସବରେ ବିଧାନ ସଭା ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାସ, ମନ୍ତ୍ରୀ ଶ୍ରୀ ପ୍ରସନ୍ନ ପାଟଶାଣୀ, ଶ୍ରୀ ପ୍ରସନ୍ନ କୁମାର ଆଚାର୍ଯ୍ୟ ଓ ଶ୍ରୀ ବୈରାଗୀ ଜେନାଙ୍କ ଯୋଗଦାନ ।
(୨୦/୯)




ସୂଚନା ଭବନଠାରେ ଅନୁଷ୍ଠିତ ଭାରତ ଲୋକ ସମ୍ପର୍କ ସୋସାଇଟିର ବାର୍ଷିକ ଉତ୍ସବରେ ମାନ୍ୟବର ରାଜ୍ୟପାଳ ଶ୍ରୀ ବି: ସତ୍ୟନାରାୟଣ ରେଡ୍ଡୀଙ୍କ ଯୋଗଦାନ ।(୨୮/୯)



ବଲାଙ୍ଗୀରଠାରେ ନୂତନ ଭାବେ ନିର୍ମିତ ହୋଇଥିବା ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ କାର୍ଯ୍ୟାଳୟ ଗୃହକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି । (୨୬/୯)



ସୂଚନା ଭବନଠାରେ ଆୟୋଜିତ ଓଜନ ଓ ମାପ ବିଭାଗର ଚତୁର୍ଥ ଶ୍ରେଣୀ କର୍ମଚାରୀ ୟୁନିୟନର ଚତୁର୍ଦ୍ଦଶ ବାର୍ଷିକ ସମ୍ମିଳନୀରେ ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ ଶ୍ରୀ ଭାଗବତ ବେହେରା ଓ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନାଙ୍କ ଯୋଗଦାନ (୨୭/୯) ।




ଭୁବନେଶ୍ୱରଠାରେ ଜଳ ଯୋଗାଣ ଓ ସ୍ୱେରେଜ୍ ସିଷ୍ଟମ୍ ଉପରେ ଜନ ସ୍ୱାସ୍ଥ୍ୟ ଇଞ୍ଜିନିୟର୍ସ (ଇଣ୍ଡିଆ) ଆନୁକୂଲ୍ୟରେ ଆୟୋଜିତ ଦୁଇ ଦିନିଆ ଜାତୀୟ କର୍ମଶାଳାକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି (୧୦/୯)।



ବିଶ୍ୱ ବ୍ୟାଙ୍କ୍‌ର ଏକ ପ୍ରତିନିଧି ଦଳ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ସଚିବାଳୟ ପ୍ରକୋଷ୍ଠରେ ସାକ୍ଷାତ କରି ଆଲୋଚନା କରୁଛନ୍ତି (୨୭/୯)।



ଭାରତ ଛାଡ଼ ଆନ୍ଦୋଳନ ପାଳନ ଉପଲକ୍ଷେ ଆୟୋଜିତ ଏକ ରାଜ୍ୟସ୍ତରୀୟ କମିଟି ବୈଠକରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନାଙ୍କ ଉଦ୍‌ବୋଧନ (୨୪/୯)।



ଓଡ଼ିଶା ପୋଲିସ୍ ପଦାଧିକାରୀ ଓ କର୍ମଚାରୀଙ୍କ ତରଫରୁ ପୋଲିସ୍ ମହା ନିର୍ଦ୍ଦେଶକ ଶ୍ରୀ ଶରତ ଚନ୍ଦ୍ର ମିଶ୍ର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ୨ ଲକ୍ଷ ଟଙ୍କାର ଏକ ଚେକ୍ ପ୍ରଦାନ କରୁଛନ୍ତି (୪/୧୦)।



ଓଡ଼ିଶା ବିଧାନ ସଭା ଗୃହରେ ଓଡ଼ିଶା ଓ ବିହାର ବିଧାନ ସଭା ପରିଷଦର ମିଳିତ ପ୍ରିଭିଲେଜ୍ କମିଟି ବୈଠକ ଅନୁଷ୍ଠିତ (୨୫/୯)।



ବିଧାନ ସଭା ସଦସ୍ୟ ଶ୍ରୀ ଅଶୋକ ଦାସ, ଉଚ୍ଚ ଶିକ୍ଷା ମନ୍ତ୍ରୀ ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀ ଓ ଜଳସେଚନ ମନ୍ତ୍ରୀ ଶ୍ରୀ ବିଜୟ ମହାପାତ୍ର ଏକ ପ୍ରତିନିଧି ଦଳରେ ଯାଇ କୁଡ଼ୁମି, ମହତା ଓ ପୁରାଣ ଜାତିଗୁଡ଼ିକୁ "ପଛୁଆ ବର୍ଗରେ ଯୋଗ କରିବା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ସାକ୍ଷାତ କରି ଏକ ସ୍ମାରକପତ୍ର ପ୍ରଦାନ କରୁଛନ୍ତି (୪/୧୦)।



ରବୀନ୍ଦ୍ର ମଣ୍ଡପଠାରେ ଅନୁଷ୍ଠିତ ମହିଳା ଦୁଃସାହସିକ କ୍ଲବ୍‌ର ବାର୍ଷିକ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଅଭିଭାଷଣ (୨୭/୩)।




ପୁରୀଠାରେ ଆୟୋଜିତ ତିନି ଦିନିଆ ମହିଳା ଯୁବ ନେତୃତ୍ୱ ତାଲିମ ଶିବିରରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନାଙ୍କ ଉଦ୍‌ବୋଧନ (୨୯/୩)।

ଅର୍ଥାତ୍ ସେହି ବିନ୍ଦୁକୁ କେହି ଆଦ୍ୟା, ପରମାଦ୍ୟା, ଶ୍ରୀଗୁରୁ, ବିଷ୍ଣୁ, ଶିବ ଓ ଦୁର୍ଗା ନାମରେ ଭୂଷିତ କରିଥାନ୍ତି । ପୁରାଣରେ ମଧ୍ୟ ବ୍ୟୋମରୁ ଅଗ୍ନିର ସ୍ଫୁରଣ ହୋଇଥିଲା, ଫଳ ସ୍ୱରୂପ ବିଦ୍ୟୁତ୍‌ପ୍ରଦା ସୁନ୍ଦରୀ ଯୋଗୀତତ୍ତ୍ୱର ଉତ୍ପତ୍ତି ଘଟିଥିଲା ବୋଲି ବ୍ୟକ୍ତ ହୋଇଛି । ସକଳବର୍ଣ୍ଣ ଦେବତାରୂପ ସ୍ଫୁର୍ତ୍ତ ହୋଇ ଅର୍ଥାତ୍ କୁଣ୍ଡଳିନୀ ଉତ୍ଥାନରୁ ବ୍ୟୋମରେ ଅଗ୍ନି ତେଜରେ ପରିଣତ କଥା ସ୍ୱୀକୃତ ହୋଇଛି । ସୁତରାଂ ଏହା ଯୋଗକ୍ରିୟାର ବିଷୟ ବସ୍ତୁ ଯାହାକି ପୁରାଣ ରୂପ ବହନ କରିଛି :—

ଅତୁଳଂ ତତ୍ର ତତ୍ତେଜଃ ସର୍ବଦେବଶରୀରଜମ୍ ।
ଏକସ୍ଥଂ ତଦଭୂନ୍ନାରୀ ବ୍ୟାପ୍ତଲୋକତ୍ରୟଂ ତ୍ୱିଷା ॥

(ଚଣ୍ଡୀ ୨/୧୩)

ଅର୍ଥାତ୍ ସର୍ବଦେବ ଶରୀର ନିର୍ଗତ ସେହି ଅତୁଳନୀୟ ତେଜ ସମୂହ ଏକତ୍ରିତ ହୋଇ ନାରୀରୂପ ଧାରଣ କଲା ଯାହାକି ତିନି ଲୋକରେ ବ୍ୟାପ୍ତ ହୋଇଅଛି ।

ସମ୍ଭବତଃ ମାତୃକା ଶବ୍ଦରୁ ମାତା ଶବ୍ଦ ପ୍ରତିଧ୍ୱନିତ ହୋଇଛି ଯାହାକି ନାରୀର ମୁଖ୍ୟାର୍ଥ ବୋଧକ । ମାତା ଯେପରି କୋମଳ ତଥା ଦୟାଳୁହୃଦୟା ହେତୁ ଆନନ୍ଦ ବିଧାୟିନୀ ଇହ ଜଗତରେ ତତ୍ସମା ଅନ୍ୟକେହି କୁତ୍ରାପି ପରିଦୃଷ୍ଟ ହୁଅନ୍ତି ନାହିଁ । ସନ୍ତାନ କୌଣସି ମତେ ଦୁଷ୍ଟରୁ ଅତିଦୁଷ୍ଟ, ସ୍ୱେଚ୍ଛାଚାରୀ, ମାତୃସେବା—ବିମୁଖ ହେଲେ ମଧ୍ୟ ଜନନୀ ସର୍ବଦା ତାହାର ହିତୈଷିଣୀ ହୋଇ ରହିଥାଏ ଏବଂ ସ୍ୱୟଂ ସନ୍ତାନର ସେବାକରି ତାହାକୁ ପ୍ରସନ୍ନ କରାଇଥାଏ । ସ୍ୱକୀୟ ସନ୍ତାନକୁ କେବେହେଲେ ସେ ପରିତ୍ୟାଗ କରିବାର ଦେଖାଯାଏ ନାହିଁ । ଏହି ତାତ୍ପର୍ଯ୍ୟାର୍ଥ ସମ୍ବଳିତ ବିଷୟବସ୍ତୁ 'ମଧୁବିଦ୍ୟା' ନାମରେ ଖ୍ୟାତି ଲାଭ କରିଅଛି ଯାହାକି ଦୁର୍ଗାପୂଜା ବା ଦୁର୍ଗତିମୋଚନୀ ସ୍ନେହ ନାମରେ ଶାସ୍ତ୍ର—ସିଦ୍ଧାନ୍ତ ନେଇ ଏତାଦୃଶ ଅଭିବ୍ୟକ୍ତି ବହନ କରିଅଛି ।

"କୁପୁତ୍ରୋ ଜାୟେତ କ୍ୱଚିଦପି କୁମାତା ନ ଭବତି ।"

(ଆଚାର୍ଯ୍ୟ ଶଙ୍କର)

ସମରାଙ୍ଗନ (ଦୈବାସୁର ଯୁଦ୍ଧଭୂମି)ରେ ଦୁଷ୍ଟବୁଦ୍ଧିର ବିଲୟ କରାଇବାକୁ ଯାଇ ସ୍ୱୟଂ ଶମ୍ଭୁଙ୍କୁ ପରମକାରଣିକା 'ଅଦ୍ୟା' ବୁଝାଇ କହୁଅଛନ୍ତି ଯେ—

ଏକୈବାହଂ ଜଗତ୍ୟତ୍ର ଦ୍ୱିତୀୟା କା ମମାପରା ।
ପଶ୍ୟୈତା ଦୁଷ୍ଟ ମୟ୍ୟେବ ବିଶନ୍ତ୍ୟୋ ମଦ୍ବିଭୂତୟଃ ॥

(ସପ୍ତଶତୀ ଚଣ୍ଡୀ)

ହେ ଶୁମ୍ଭ ! ମଦ୍‌ଭିନ୍ନ ଦ୍ୱିତୀୟ ଆଉ କେହି ନାହିଁ । ମୁଁ ଏକ ଓ ଅଭିନ୍ନ ତଥା ଅନ୍ୟ ସବୁକିଛି ମୋର ବିଭୂତି ସମ୍ଭୂତ ଅଟେ । ଯାହାକି ବୈଷ୍ଣବ ଦର୍ଶନରୁ ସମାଧି ସ୍ତରରେ—

ଯଦା କିଞ୍ଚିଂ ଜଗତ୍‌ସର୍ବଂ ଭିନ୍ନତ୍ୱେନ ପ୍ରତୀୟତେ ।
ତଦାଦ୍ୟାବିଦ୍ୟା ସଂସିଦ୍ଧା ଭେଦା ଦୁଃଖସ୍ୟ ସାଧନମ୍ ॥

(ନାରଦୀୟ ଭକ୍ତିସୂତ୍ର)

ଜଗତରେ ଭିନ୍ନଭିନ୍ନ ପ୍ରତୀତିରୁ ଅବିଦ୍ୟା ତଥା ଭେଦ ବୁଦ୍ଧିରୁ ଦୁଃଖ ଭୋଗ ଜାତ ହୋଇଥାଏ ବୋଲି ଅଭିହିତ ହୋଇଅଛି । ମାତ୍ର ଶୈବଧର୍ମ ଏ ଦୋଷ ଦୃଷ୍ଟିକୁ ସଂଗ୍ରାହୀ ଦୃଷ୍ଟିରେ ଗ୍ରହଣ କରି ଏଥିରୁ ମୁକ୍ତି ମିଳିବାର ପନ୍ଥା ନିରୂପଣ କରିଛନ୍ତି ।

ଶିବଧର୍ମାନ୍ୱୟସ୍ୟାସ୍ୟ ଶିବଜ୍ଞାନ ସମନ୍ୱୟଃ ।
ଜ୍ଞାନାନ୍ୱୟବଶାତ୍ ପୁଂସଃ ସଂସାରେ ଦୋଷଦର୍ଶନମ୍ ॥
ତତୋ ବିଷୟ ବୈରାଗ୍ୟଂ ବୈରାଗ୍ୟାଦାତ୍ମବସାଧନମ୍ ।
ଭାବସିଦ୍ଧ୍ୟୁପପନ୍ନିସ୍ୟ ଧ୍ୟାନେ ନିଷ୍ଠା ନ କର୍ମଣି ॥
ଜ୍ଞାନା ଧ୍ୟାନାଭିଯୁକ୍ତସ୍ୟ ପୁଂସୋ ଯୋଗଃ ପ୍ରବର୍ତ୍ତତେ ।
ଯୋଗେନତୁ ପରାଭକ୍ତିଃ ପ୍ରସାଦସ୍ତଦନନ୍ତରମ୍ ।
ପ୍ରସାଦାନ୍ମୁଚ୍ୟତେ ଜନ୍ତୁର୍ମୁକ୍ତଃ ଶିବସମୋଭବେତ୍ ॥

(ଐପି—୨/୭୩—୭୭)

ଶିବଧର୍ମରୁ ପୁରୁଷର ଶିବଜ୍ଞାନ ଜନ୍ମେ । ଜ୍ଞାନ ଜାତ ହେଲେ ପୁରୁଷ ସଂସାରରେ ଦୋଷ ଦର୍ଶନ କରେ । ତାପରେ ତା'ର ବିଷୟ ବୈରାଗ୍ୟ ଉପସ୍ଥିତ ହୁଏ । ବୈରାଗ୍ୟରୁ ଭାବ ସାଧନ ଘଟେ । ଭାବସିଦ୍ଧିରୁ କର୍ମରେ ନିଷ୍ଠା ରହେ ନାହିଁ ମାତ୍ର ଧ୍ୟାନରେ ନିଷ୍ଠାଜାତ ହୁଏ । ଜ୍ଞାନ ଓ ଧ୍ୟାନ ସମ୍ପନ୍ନ ପୁରୁଷ ଯୋଗାଚରଣରେ ବ୍ରତୀ ହୁଏ ଏବଂ ତା'ପରେ ଆସେ ଶିବ ପ୍ରସାଦ । ସେହି ପ୍ରସାଦ ବଳରେ ଜୀବମୁକ୍ତ ହୋଇ ଶିବତୁଲ୍ୟ ହୋଇଥାଏ ଅର୍ଥାତ୍ ସକଳ ବିଭୂମୟ ଏହାବୋଧ କରେ । ନିଷ୍ପତ୍ତିରେ ସବୁ ଏକ, ମାତ୍ର ଭିନ୍ନ ଦୃଷ୍ଟିରୁ ପଥ ମଧ୍ୟ ଭିନ୍ନ । ଏଥି ଲାଗି ବୋଧହୁଏ ସମସ୍ତ ଯୋଗୀ ଶୈବଧର୍ମାବଲମ୍ବୀ ହୋଇଥାନ୍ତି । ଭୋଗରୁ ତ୍ୟାଗର ଉତ୍କର୍ଷ ଏହା ସେମାନଙ୍କର ଅଭିମତ ହୋଇଥାଏ । ସାଧାରଣତଃ ସେମାନେ ଅହଂତ୍ୱ ବା ଆତ୍ମବଳ ଭିତ୍ତିକ ହୋଇଥାଆନ୍ତି ମାତ୍ର ଆତ୍ମସାକ୍ଷାତ୍କାର ପାଇ ନ ଥିବାରୁ ଶେଷରେ ବୈଷ୍ଣବ ବା ଶାକ୍ତ ଧର୍ମରେ ଆସ୍ଥା ପ୍ରଦାନ କରନ୍ତି ।

'ଦେବୀ'ଙ୍କ ଆୟୁଧର ମଧ୍ୟ ତାତ୍ପର୍ଯ୍ୟାର୍ଥ ରହିଛି ।

ପ୍ରାଚୀନୋତ୍କୀର୍ଣ୍ଣ ବିଗ୍ରହାବଲୋକନରୁ 'ଦଶଭୁଜା'ଙ୍କର ଦକ୍ଷ ହସ୍ତ ପଞ୍ଚକରେ :—

(୧) ଶୂଳ :—ଅହଂକାର ଏହା ତିନିଭାଗରେ ବିଭକ୍ତ (ସତ୍ତ୍ୱ, ରଜ, ଓ ତମ) ତେଣୁ ଏହାର ନାମ ତ୍ରିଶୂଳ ।

( ଖଡ୍‌ଗ :—ଯାହାକି ବୈରାଗ୍ୟର ନିଦାନ

ବୈରାଗ୍ୟନନ୍ଦକଂ ଖଡ୍‌ଗଂ ଶ୍ରୁତ୍ୱା ବୈତେନ ବନ୍ଧନମ୍ ।
ନନ୍ଦନ୍ତି ଯୋଗିନୋ ଯସ୍ମାତ୍ ତସ୍ମାଚ୍ଚ ନନ୍ଦକଂ ସ୍ମୃତମ୍ ॥

(୩) ଚକ୍ର :—(ବିଷ୍ଣୁମାୟାର ପୁନଃ ବିସ୍ତାର) ।
(୪) ତୀକ୍ଷ୍ଣବାଣ :—(ଯୋଗ)
(୫) ଶକ୍ତି :—ବ୍ରହ୍ମଚର୍ଯ୍ୟ

ଓ ବାମହସ୍ତ ପଞ୍ଚକରେ :—

(କ) ଖେଟକ ବା ଦଣ୍ଡ (ପ୍ରତିରୋଧ)
(ଖ) ପୂର୍ଣ୍ଣଚାପ—(ସାଂଖ୍ୟ)
(ଗ) ନାଗପାଶ—କୁଣ୍ଡଳିନୀ (ତୀବ୍ରମାୟିକ ଶକ୍ତି)

# ସାୟୁଧା ଦୁର୍ଗାଙ୍କ ଧ୍ୱନ୍ୟାତ୍ମକମାନ ନିର୍ଣ୍ଣୟ

* ଶ୍ରୀ ବିଭୁବନାନନ୍ଦ ପରମହଂସ

ବୈଦିକ ଉପାସନାରେ ଉଦ୍‌ଗୀଥୋପାସନା, ଉପକୋଶଳ ବିଦ୍ୟା, ପଞ୍ଚାଗ୍ନି ବିଦ୍ୟା, ସଂବର୍ଗ ବିଦ୍ୟା, ମଧୁ ବିଦ୍ୟା, ଶାଣ୍ଡିଲ୍ୟ ବିଦ୍ୟା, ପର୍ଯ୍ୟଙ୍କୋପାସନା ବିଦ୍ୟା, ଅଗ୍ନି ବିଦ୍ୟା ଇତ୍ୟାଦି ପ୍ରଚଳିତ ହୋଇ ଆସୁଅଛି । ତନ୍ମଧ୍ୟରୁ ସଂବର୍ଗ–ମଧୁ–ଓ ପର୍ଯ୍ୟଙ୍କୋପାସନା ବିଦ୍ୟା ଶକ୍ତି ଉପାସକ । ଶାସ୍ତ୍ରାର୍ଥ ସାରାଂଶ ନିର୍ଣ୍ଣୟ ଯୁକ୍ତିରୁ–

ମନ ଏବ ମନୁଷ୍ୟାଣାଂ କାରଣଂ ବନ୍ଧମୋକ୍ଷୟୋଃ,
ବନ୍ଧାୟ, ବିଷୟାସଙ୍ଗି ମୁକ୍ତୌ–ନିର୍ବିଷୟଂ ମନଃ ।

ଅର୍ଥାତ୍–ମନୁଷ୍ୟର ମନ ତାହାର ବନ୍ଧନ ଓ ମୋକ୍ଷର କାରଣ ହୋଇଥାଏ । ସୁତରାଂ ବିଷୟାସକ୍ତ ମନ ସଂସାର ଶୃଙ୍ଖଳାବଦ୍ଧ ହୁଏ ତଥା ବିଷୟ ନିର୍ଲିପ୍ତମନ ମୁକ୍ତି–ପଥାବଲମ୍ବନ କରେ । ଏତଦ୍ ଭିତ୍ତିକ ନିତ୍ୟନୈମିତ୍ତିକ ଉପାସନା ମଧ୍ୟ ନିର୍ଣ୍ଣିତ ହୋଇଅଛି ।

ଏବଂ ଗୁଣାନୁସାରେଣ ରୂପାଣି ବିବିଧାନି ଚ,
କଳ୍ପିତାନି ହିତାର୍ଥାୟ ଭକ୍ତାନାମ୍ ଅଳ୍ପମେଧସାମ୍ ।

ଅର୍ଥାତ୍–ଅଳ୍ପବୁଦ୍ଧିଯୁକ୍ତ ଜ୍ଞାନହୀନ ଭକ୍ତମାନଙ୍କର ହିତାର୍ଥ ନିମିତ୍ତ ଗୁଣାନୁଭେଦରେ ଦେବୀଙ୍କର ବିବିଧରୂପର ପରିକଳ୍ପନା କରାଯାଇଅଛି ।

ମହାନିର୍ବାଣ ତନ୍ତ୍ରମତରେ ମନ୍ତ୍ର ଓ ମନ୍ତ୍ରାର୍ଥଚୈତନ୍ୟ ଲାଗି ଦୁର୍ଗା ଶବ୍ଦର ଧ୍ୱନ୍ୟାତ୍ମକ ଅର୍ଥ ନିର୍ଣ୍ଣିତ ହୋଇଅଛି । କାମଧେନୁ ତନ୍ତ୍ର ମତରେ ବର୍ଣ୍ଣରୂପା ମାତୃକାରୁ ବ୍ରହ୍ମାଦି ଦେବଗଣଙ୍କର ଉତ୍ପତ୍ତି ଘଟିଛି ବୋଲି କୁହାଯାଇଛି । କୁଳସାଧନୀ ସ୍ୱୟଂ ପରମକୁଣ୍ଡଳୀ ଅକାରାଦିକ୍ଷକାରାନ୍ତା ବର୍ଣ୍ଣରୂପା ହେତୁ ଚରାଚର ସମସ୍ତ ବିଶ୍ୱ, ନାନାଶାସ୍ତ୍ର, ପୁରାଣ, ଇତିହାସ, ବେଦ, ସ୍ମୃତିଶାସ୍ତ୍ର ଓ ଅନ୍ୟାନ୍ୟ ସବୁକିଛି ପ୍ରସବ କରିଅଛନ୍ତି । ଅକ୍ଷରଜାତ ହେତୁ ସବୁ କିଛି ବ୍ରହ୍ମମୟ ହୋଇଛି :–

ଅକାରାଦିକ୍ଷକାରାନ୍ତା ସ୍ୱୟଂ ପରମକୁଣ୍ଡଳୀ,
ସର୍ବଂ ଚରାଚରଂ ବିଶ୍ୱଂ ବର୍ଣ୍ଣାସା ଜାୟତେ ଧ୍ରୁବମ୍ ।
ନାନାଶାସ୍ତ୍ରଂ ପୁରାଣଞ୍ଚ ଇତିହାସଞ୍ଚ ସୁନ୍ଦରି,
ବେଦଂଚ ସ୍ମୃତିଶାସ୍ତ୍ରଞ୍ଚ ଅନ୍ୟାନି ଯାନି କାନି ଚ ।
ଅକ୍ଷରାଜ୍ଜାୟତେ ସର୍ବଂ ପରଂ ବ୍ରହ୍ମମୟଂ ପ୍ରିୟେ ।

କାମଧେନୁ ତନ୍ତ୍ର ଦ୍ୱ:ଏଁ ପୁ–୯

ତନ୍ତ୍ରରେ ବର୍ଣ୍ଣସମୂହକୁ ଭୂତାତ୍ମକ ବା ଭୌତିକ ବୋଲି କୁହାଯାଏ । ପଞ୍ଚଭୂତାନୁଯାୟୀ ଏହାକୁ (ଅର୍ଥାତ୍ ପ୍ରୋକ୍ତ ମାତୃକାକୁ) ପାଞ୍ଚ ଭାଗରେ ମଧ୍ୟ ବିଭକ୍ତ କରାଯାଇଛି ।

କାରଣାତ୍ ପଞ୍ଚଭୂତାନାମ୍ପ୍ରଭୂତା ମାତୃକା ଯତଃ,
ତତୋ ଭୂତାତ୍ମକା ବର୍ଣ୍ଣାଃ ପଞ୍ଚ ପଞ୍ଚ ବିଭାଗତଃ ।

(ଶାରଦା ତିଳକ ୨/୯)

ଏହି ଯୁକ୍ତିରୁ 'ଦୁର୍ଗା' ଶବ୍ଦକୁ ଭାଙ୍ଗି ଦେଲେ ଦ, ଉ, ର, ଗ, ଆ, ଯଥାକ୍ରମେ କ୍ଷିତି, କ୍ଷିତି, ତେଜ, କ୍ଷିତି ଓ ମରତ୍ ପର୍ଯ୍ୟାୟୀଭୂତ ହେବ କାରଣ–

ଅ ଆ ଏ କ ଚ ଟ ତ ପ ଯ ଷ-----ମାରତ୍ ବା ବାୟବ୍ୟବର୍ଣ୍ଣ; ମରୁତ୍

ଇ ଈ ଐ ଖ ଛ ଠ ଥ ଫ ର କ୍ଷ-----ତୈଜସ ବା ଆଗ୍ନେୟବର୍ଣ୍ଣ, ତେଜଃ

ଉ ଊ ଓ ଗ ଜ ଡ଼ ଦ ବ ଳ ଲ୍-----ପାର୍ଥିବ ବର୍ଣ୍ଣ; କ୍ଷିତି ଋ ଌ ଔ ଘ ଝ ଢ଼ ଧ ଭ ବ ସ-----ବାରଣବର୍ଣ୍ଣ–ଅପ୍

ଂ ଃ । ଙ ଞ ଣ ନ ମ ଶ ହ-----ବ୍ୟୋମ ବର୍ଣ୍ଣ–ବ୍ୟୋମ୍

ଅର୍ଥାତ୍–ଦ–ପୃଥିବୀରେ ଉ–ପୃଥ୍ୱୀ, ସୁ ମେରୁ ବା ମୂଳାଧାର ମଧ୍ୟସ୍ଥ, ଅ–ମରତ୍ ଅର୍ଥାତ୍ ବାୟୁ, ଗ–ଦେହ (ଯାହାକି କ୍ଷିତିମୟ) ତାହା ଭେଦକରି ଶୂନ୍ୟସ୍ଥରୀ ହେଲେ (ଅର୍ଥାତ୍ ବ୍ୟୋମ–ଆକାଶ ବା ସହସ୍ରାରରେ ସଂଚରଣ କଲେ) ର–ଅଗ୍ନିରୂପ ଧାରଣ କରେ (ବୈରାଗ୍ୟ–ସମ୍ବଳିତ ନିସ୍ପୃହରୂପ ଧାରଣ କରେ) ଫଳରେ ତମୋ (ମୋହ) ଓ ରଜୋଗୁଣ (କର୍ମ)ର ବିନାଶ ଘଟି ସତ୍ତ୍ୱଗୁଣ (ସତ୍‌ଜ୍ଞାନ, ମହଦାନନ୍ଦ ଓ ମୁକ୍ତି) ମିଳେ । କାମକଳା ବିଳାସ ତନ୍ତ୍ରର ଚିଦ୍‌ବଲ୍ଲୀ ବ୍ୟାଖ୍ୟାରେ କୁହାଯାଇଛି ଯେ:–

ବିନ୍ଦବେ ପରମାକାଶେ ସଚ୍ଚିଦାନନ୍ଦ ଲକ୍ଷଣେ,
ନିଷ୍ପ୍ରପଞ୍ଚେ ନିରାଭାସେ ନିର୍ବିକଳ୍ପେ ନିରାମୟେ ।

ବିନ୍ଦୁ (ପରମାତ୍ମାଙ୍କ ନିଳୟ)ର ଶ୍ରେଷ୍ଠ ସ୍ଥାନ ହେଉଛି ଆକାଶ । ସଚ୍ଚିଦାନନ୍ଦ ଲକ୍ଷଣରେ ଯାହା ନିଷ୍ପ୍ରପଞ୍ଚ: ନିରାଭାସ ନିର୍ବିକଳ୍ପ; ଓ ନିରାମୟ ରୂପ ହୋଇଥାଏ ।

# ଆଉ ଥରେ ତୁମେ ବୁଲି ଆସନ୍ତ କି ?

* ଶ୍ରୀ ରାଧାନାଥ ଦାସ

ତୁମେ ପରାଦିନେ ଢାଳିଥିଲ ଲୁହ
ନିଜ ଜୀବନକୁ ଦେଇଥିଲ ବଳୀ
ତୁମେ ପରା ସେହି ଦରଦୀ କବି ହେ
ଲେଖିଗଲ ଯେଉଁ କାଳ ଜୟୀ ଗୀତି
ତୁମ ମାଟି ଦେହ ମିଶି ସାରିଲାଣି
ତୁମ ମାଂସ, ହାଡ଼େ ପୁରି ଗଲାଣିତ
ଆଜି ତୁମ କଥା ମନେ ପଡ଼େ–

ଉତ୍କଳ ଜନନୀ ଦୁର୍ଦ୍ଦଶା ଦେଖି
ଲୁହ ଓ ଲହୁରେ କବିତା ଲେଖି–
ଜାତି, ପ୍ରୀତି ଭାବ ହୃଦରେ ବହି
କୋଟି ଜନ–ମନ ନିଅଇ ମୋହି–
ଏ ଦେଶ ମାଟିରେ କେଉଁ ଦିନୁ'ତ
ଦେଶର ସ୍ୱରାଜ୍ୟ ପଥର ଗାତ.......

ଆଉ ଥରେ ତୁମେ ବୁଲି ଆସନ୍ତ କି, ତୁମ ଏ ଓଡ଼ିଶା ଆଡ଼େ ।।୧।।

ପ୍ରଳୟ ଜଳରେ ବୁଡ଼ି ଯାଉଥିଲା
ଅବତାର ଲଭି ଆହେ ଅବତାରୀ
ଅସକର୍ତ୍ତା ଏହି ଓଡ଼ିଶାଭୂଇଁକୁ
ସ୍ୱତନ୍ତ୍ର ଉତ୍କଳ କରିଲ ଗଠନ
ଗୋଟିଏ ପୁଅକୁ ହରାଇ ତୁମେ
ଦୁର୍ଦ୍ଦିନେ ତୁମ ଦେଖା ମିଳୁଥିଲା
ଏତେ ପାଠ ପଢ଼ି ନିଜ ସ୍ୱାର୍ଥ ପାଇଁ
ଜାତି ଗଠନରେ ଦେଲ ପ୍ରାଣ ବଳୀ
ଆଜି ତୁମ କଥା ମନେ ପଡ଼େ–

ଦୁର୍ଦ୍ଦିନେ ଯେବେ ଓଡ଼ିଆ ଭାଷା
ଓଡ଼ିଆ ପ୍ରାଣରେ ଭରିଲ ଆଶା–
ସଜାଡ଼ି ଦେଲ ହେ ଲଢ଼େଇ କରି
ଓଡ଼ିଆ ପ୍ରାଣରେ ଚେତନା ଭରି–
କୋଟି କୋଟି ପୁଅ ବସିଲ ଲୋଡ଼ି
ଆସୁଥିଲା ଯେବେ ମରୁଡ଼ି ବଢ଼ି–
ସ୍ୱକିଚି ପାଇଁକି କରିନ ମନ
ଦୁଃଖୀଙ୍କ ସେବାରେ କାଟିଲ ଦିନ–

ଆଉ ଥରେ ତୁମେ ବୁଲି ଆସନ୍ତ କି, ତୁମ ଏ ଓଡ଼ିଶା ଆଡ଼େ ।।୨।।

ତୁମରି ଢେଲା ରକତରେ ସିନା
ସାରା ଭାରତରେ ନବ ଉତ୍କଳର
ଏତେ ଦୁଃଖ ସହି ଏ ଜାତିକି ତୁମେ
ଆଣିଥିଲ ଭାରତରେ ସ୍ୱାଧୀନତା
ତୁମେ ସିନା ଦୁଃଖ ସହିଥିଲ ଏତେ
ତୁମେ ଥିଲ ଏହି ଓଡ଼ିଶା ମାଟିର
କି ଦେଇ କରିବୁ ତୁମ ଆରାଧନା
ପ୍ରତି ଓଡ଼ିଆର ପରାଣେ ରହିଛି
ଆଜି ତୁମ କଥା ମନେ ପଡ଼େ–

ଏ ନବ ଉତ୍କଳ ଗଠନ ହେଲା
ବିଜୟ ଡିଣ୍ଡିମ ବାଜି ଉଠିଲା–
ନୂଆ କରି ଦେଇଥିଲ ଜୀବନ
ବାପୁଙ୍କ କଥାରେ ଡେରିଣ 'କାନ–
ଆମେ ଆଜି ତା'ର ପାଉଛୁ ମଜା
ମୁକୁଟ ବିହୀନ ଦରଦୀ ରାଜା–
ତୁମ ପାଇଁ ଆଉ ନାହିଁ ମନ୍ତର
ମୋହି ନେଇଛ ତ ପ୍ରତି ଅନ୍ତର

ଆଉଥରେ ତୁମେ ବୁଲି ଆସନ୍ତ କି, ତୁମ ଏ ଓଡ଼ିଶା ଆଡ଼େ ।।୩।।

(ଘ) ଅଙ୍କୁଶ–ସଂଯମ (ନିଷ୍ଣମ ନିନାଦ)

ମନୋମତ୍ତ ଗଜେନ୍ଦ୍ରସ୍ୟ ବିଷୟୋଦ୍ୟାନ ଚାରିଣଃ ।
ନିୟାମନ ସମର୍ଥୋଽୟଂ ନିନାଦୋ ନିଶିତାଙ୍କୁଶଃ ॥
(ନାଦବିନ୍ଦୁ ଉପନିଷଦ୍–୪୪ ଶ୍ଳୋକ)

(ଙ) ଘଣ୍ଟା :–ଧ୍ୱନି
ବା ପରଶୁ–ମୀମାଂସା

ଅର୍ଥାତ୍ :–ମୀମାଂସାରେ ନାଦାନୁଧ୍ୟାନ, ସଂଯମ, ତୀବ୍ରମାଧ୍ୱିକ ଶକ୍ତିର ଅନୁଶୀଳନ, ସାଂଖ୍ୟଜ୍ଞାନ, ପ୍ରତିରୋଧାତ୍ମକ ବିଚାର, ବ୍ରହ୍ମଚର୍ଯ୍ୟ, ଯୋଗ ଓ ବିସ୍ମୃମାଧ୍ୱାର ପୁନଃ ନିର୍ଦ୍ଧାରଣ ସର୍ବୋପରି ବୈରାଗ୍ୟ ଖଡ୍ଗ ନେଇ ମହତ୍ ଅହଂକାର ବଳରେ ତୀବ୍ର ଆସୁରିକ ଶକ୍ତି (ମହିଷାସୁର) ଯେ କି କାମର ମୂର୍ତ୍ତିମନ୍ତ ବିଗ୍ରହ ତାହାକୁ ଜଣାଯାଇ ପାରେ ।

**ସ୍ୱରୂପ ବ୍ୟାଖ୍ୟାରେ :–**

(୧) ମହଦହଙ୍କାର ହେଲା ମୁଁ ସେଇ ପରମାତ୍ମାମୟ ଶୁଦ୍ଧବୁଦ୍ଧ ତନୁ । ସୁତରାଂ କାମ ମୋର କ'ଣ କ୍ଷତି କରିପାରିବ ? ଏପରି ବିଚାରିବାରେ କାମ ଦମିତ ହୋଇଥାଏ ।

(୨) **ବୈରାଗ୍ୟ :–**ପ୍ରଦୀପ୍ତ ହୋମାଗ୍ନିରେ ଘୃତାହୁତି ପ୍ରଦାନ କଲେ ତାହା ପ୍ରଜ୍ୱଳିତ ହୁଏ, ପରନ୍ତୁ ପ୍ରଶମିତ ହୁଏନା । ତେଣୁ 'କାମ' ଆସକ୍ତିକ୍ଷୟକାରୀ ମାତ୍ର ଆତ୍ମତୃପ୍ତି ଦାୟକ ନୁହେଁ, ଏପରି ବିଚାରଧାରା କାମହନ୍ତାକାରୀ ଅଟେ ।

(୩) **ବିସ୍ମୃମାଧ୍ୱା :–**ଈଶ୍ୱରକୃତ ଲିଙ୍ଗଭେଦ ଫଳତଃ ଇନ୍ଦ୍ରିୟାନୁଭୂତି ଏହାର ପୁନଃ ବିଚାର କାମ ନାଶ କରେ ।

(୪) **ଯୋଗ :–**ମନ ଈଶ୍ୱରାଭିମୁଖୀ (ଯୋଗଯୁକ୍ତ) ହେଲେ'କାମ' ହୃଦୟରୁ ଅପସରି ଯାଏ ।

(୫) **ବ୍ରହ୍ମଚର୍ଯ୍ୟ :–**ବ୍ରହ୍ମତ୍ୱ ଆଚରଣରେ, କାମପ୍ରତି ଘୃଣାଭାବ ଆସେ ।

(୬) **ପ୍ରତିରୋଧ :–**ଶରୀର ମଧ୍ୟରେ କାମ ଉପସ୍ଥିତ ହେବାମାତ୍ରେ ଜ୍ଞାନ–ଯଷ୍ଟି ଦ୍ୱାରା ତାହାକୁ ଆଘାତ କରିବା କାମ ଅବନତିର ଉପାୟ ଅଟେ ।

(୭) **ସାଂଖ୍ୟ (କର୍ମ) :–**ବାରମ୍ବାର ଆତ୍ମିକ ଅନୁଶୀଳନ କରିବା ଅର୍ଥାତ୍ :–ମୋର ଏତିକି ଆଧ୍ୟାତ୍ମିକ ଉନ୍ନତି ଘଟିଛି ବାକି ଏ ସବୁ ଗୁଣରେ ମୁଁ ଉନ୍ନତି କରି ପାରି ନାହିଁ । ଏପରି ବିଚାରରେ କ୍ରମେ କାମ ଭାବନା ସମାଧି ଲାଭ କରେ ।

(୮) **କୁଣ୍ଡଳିନୀ :–**ଲିଙ୍ଗ ଭେଦ ଜ୍ଞାନରୁ ବ୍ରହ୍ମଶକ୍ତିମୟ ଭାବନାରେ କାମର ବିନାଶ ଘଟିଥାଏ (ଏହା ଏକ ପ୍ରକାର ଯୌଗିକ କ୍ରିୟା) ।

(୯) **ସଂଯମ :–**ଉନ୍ମତ୍ତ ହସ୍ତୀକୁ ଅଙ୍କୁଶ ବଳରେ ଆୟତ୍ତାଧୀନ କଲାପରି ସଂଯମ ବଳରେ କାମକୁ ଆୟତ୍ତ କରାଯାଇ ପାରେ । ଫଳତଃ ମନୁଷ୍ୟ ସର୍ବକାତର ହୁଏନା ।

(୧୦) **ନାଦାନୁସନ୍ଧାନ :–**ନାଦ ଜ୍ଞାନ ବଳରେ ଅଜପା ସାଧନ ବଶତଃ କାମ ବିଲୟ ପ୍ରାପ୍ତ ହୁଏ ।

**ବା : ପରଶୁ–ମୀମାଂସା :–**କାମ ଉତ୍ଥାନର କ୍ଷୟକାରୀ ଏହା ବାରମ୍ବାର ନିଷ୍ପତ୍ତି ନେଲେ ପୁନଃ କାମ ପ୍ରବୃତ୍ତ ହେବାଲାଗି ମନବଳେ ନାହିଁ ।

ସୁତରାଂ ତତ୍ତ୍ୱବିଲୀନକ ଶ୍ରେଷ୍ଠାଂଶରେ 'ମାୟା' ଜ୍ଞାନ ଆସନରେ ଆସୀନ ହେଲେ କାମର ବିନାଶ ଘଟେ । ଏହି ମହାନ୍ ତତ୍ତ୍ୱ ଉପରେ ଦୁର୍ଗାପୂଜା ଆଧାରିତ । ସେହିପରି ବୃହଦ୍‌ଜ୍ଞାନ (କାଳୀ)ଙ୍କୁ ଜ୍ଞାନ (ସିଂହ) ଆସନ ପ୍ରଦାନ କଲେ ତାହା ସମସ୍ତ ଆସୁରୀଶକ୍ତି ନାଶିନୀ ହୋଇଥାଏ । ଏହା ହେଉଛି କାଳୀ ତତ୍ତ୍ୱର ନିଃସର୍ଗ, ସାରବତ୍ତା ।

ସୁ ପ୍ରାଚୀନ ତନ୍ତ୍ରପ୍ରସିଦ୍ଧ "ଉଡ୍ରାଖ୍ୟ" ଏହି ଓଡ଼ିଶାରେ ଯାଜପୁର ଉତ୍ସର୍ଗୀକୃତ ହ୍ରୀଁ (ଗୁହ୍ୟମୟ) କାଳିଙ୍ଗୀ ସଂସ୍କୃତିର ସ୍ୱାରକୀ ଦେବୀକ୍ଷେତ୍ର ଶାକ୍ତାନୁଲିପ୍ସାର ମହୋଜ୍ଜ୍ୱଳତା ନୟନ ମନକୁ ଉଲ୍ଲସିତ କରାଏ । ଅଧିଷ୍ଠାତ୍ରୀ ଦେବୀ ବିରଜା ଓ ତାହାଙ୍କ ମସ୍ତକ ଚୂଡ଼ାରେ ଗଣପତି, ସର୍ପ ସମ୍ରାଟ, ସ୍ତ୍ରୀ ଚିହ୍ନ (ଯୋନି) ପୁରୁଷ ଚିହ୍ନ (ଲିଙ୍ଗ) ଏବଂ ସୁଧାକର ଚନ୍ଦ୍ର ଏହି ପଞ୍ଚ ମୁଦ୍ରାରୁ ଗଣକୁଣ୍ଡଳୀ ଶିବଶକ୍ତିମୟ ଲିଙ୍ଗାୟତନକୁ ଅର୍ଥାତ୍ ଆନ୍ତଃବହି–ଗୁହ୍ୟବ୍ୟକ୍ତ ଶରୀରକୁ ବିଶୁଦ୍ଧ ଚୈତନ୍ୟସତ୍ତା ପ୍ରଦାନ କରାଇ ମନୋମୟ କ୍ଷେତ୍ରରେ ଅମୃତ ରସାୟିତ କରି ଗଢ଼ିତୋଳିବାର ସିଦ୍ଧାନ୍ତ ପ୍ରଦାନ କରେ । ଫଳ ସ୍ୱରୂପ ପଞ୍ଚଉପାଦାନିକ ସବୁ କିଛି ଲଳିତ, କୋମଳ, ଶୁଭ ଶକ୍ତିମୟ ହୋଇ ଉଠେ, ଯହିଁରୁ ବିଶ୍ୱ ସମୁଦାୟ ପ୍ରସୂତି ଲାଭ କରେ । ତେଣୁ ଆର୍ଯ୍ୟର ମଧୁମୟ ମୁଖ ନିର୍ଯ୍ୟାସରୁ :–

ଧୃତ କନକ ନିଭାଭା ଶୂଳ ଲାଙ୍ଗୁଳ ହସ୍ତା ।
ପ୍ରବଳ ମହିଷ ପୃଷ୍ଠେ ଶୂଳ ମାଭେଦୟନ୍ତୀ ॥
ଗଣପତି ଫଣିସମ୍ରାଟ୍ ଯୋନି ଲିଙ୍ଗେନ୍ଦୁ ଚୂଡ଼ାଂ ।
ଶତୟତୁ ବିରଜା ମେ ମଙ୍ଗଳଂ ମଙ୍ଗଳାନାମ୍ ॥

ଏ ଆମୋଦ ବେଶ ଉପଲବ୍ଧ କରିହୁଏ ।

କ୍ଷେତ୍ରେଶ୍ୱରୀ ବିମଳାଙ୍କ ଶ୍ରୀବିଗ୍ରହ ମଧ୍ୟ ଅନୁରୂପ ରହସ୍ୟ ବହନ କରିଥାଇଛନ୍ତି । ତାହାଙ୍କର ଅଧୋବାହୁଦ୍ୱୟ ନିମ୍ନରେ ପୁରୁଷ ଓ ନାରୀ ତଥା ଉର୍ଦ୍ଧ୍ୱକୁ ବାହୁ ଦ୍ୱୟରେ ବ୍ୟାଳଛନ୍ଦ (ସର୍ପକୁଣ୍ଡଳୀ) ଓ ଅମୃତ କୁମ୍ଭରୁ ସାମ୍ୟାପକ ନିଷ୍ପତ୍ତି ନିଃସୃତ ହେଉଛି । ନାରୀ ପୁରୁଷ ଉଭୟେ କୁଣ୍ଡଳୀ ଶୁଳନାରୁ ସେହି ଅମୃତ ଆସ୍ୱାଦନ କରନ୍ତୁ ଯାହା ବିମଳା ବା ଉଜ୍ଜ୍ୱଳା (ବିରଜା) ଶକ୍ତି ସଂଜୀବନୀ ରୂପେ ଯୋଗୀମାନଙ୍କ ଦ୍ୱାରା ଗୃହୀତ ।

---

**ପ୍ରଧାନ ଆଚାର୍ଯ୍ୟ,**
**ଜନନୀ ସେବା ସଦନ,**
**କପିଳ ପ୍ରସାଦ, ଭୁବନେଶ୍ୱର–୨ ।**

# ଛଉ ନୃତ୍ୟରେ ମୁଖା

* ଅଧ୍ୟାପକ ଡଃ ନଗେନ୍ଦ୍ରନାଥ ମହାପାତ୍ର

ମୁଖା ଲଗାଇ ନାଚିବା ଏକ ଆଦିମ ପରମ୍ପରା । ଆଦିମ ଲୋକ ବହୁ ପ୍ରକାର ନାଚ ନାଚୁଥିଲେ । ସେ ନାଚମାନଙ୍କରେ ଧାରାବାହିକତା ବା ବ୍ୟାକରଣ ନୁଏତ ନଥିଲା । ତହିଁର ସ୍ୱତଃ ସ୍ଫୂର୍ତ୍ତି ଆନନ୍ଦ ଉଦ୍ଦୀପନା ଓ ପ୍ରାକୃତିକତାଥିଲା । ଶୀକାରରେ ସଫଳତା ପରେ, କଠିନ କାର୍ଯ୍ୟ ସମ୍ପୂର୍ଣ୍ଣ ହେବାପରେ କିମ୍ବା ଦଳଗତ ଯୁଦ୍ଧରେ ବିଜୟୀ ହେବାପରେ ସେ ଆନନ୍ଦର ବହିଃପ୍ରକାଶ କରୁଥିଲା । ବିବର୍ତ୍ତନ ଭିତରଦେଇ ସେ କାଳରୁ ଏହାର ଧାରା ଅଦ୍ୟାବଧି ପ୍ରଚଳିତ ।

ପୃଥିବୀର ବିଭିନ୍ନ ସ୍ଥାନରେ ଲୋକ ନୃତ୍ୟ ଓ ଶାସ୍ତ୍ରୀୟ ନୃତ୍ୟମାନଙ୍କରେ ମୁଖା ବ୍ୟବହାରର ପ୍ରଚଳନଅଛି । ଭାରତର ବହୁ ଅଞ୍ଚଳର ନାଚମାନଙ୍କରେ ମଧ୍ୟ ମୁଖା ବ୍ୟବହୃତ ହୁଏ । ଅରଣ୍ୟର ପଶୁ ପକ୍ଷୀ, କଳ୍ପିତ ଭୂତ ବା ଅନ୍ୟ ଭୟଙ୍କର ଶକ୍ତି- ମାନଙ୍କ ରୂପରେ ନିଜକୁ ସଜାଇ କୌତୁକରେ ଆନନ୍ଦ ଲାଭ କିମ୍ବା କୌଶଳ ପ୍ରୟୋଗ କରି କାର୍ଯ୍ୟ ହାସଲ କରିବା ମଣିଷର ଏକ ଆଦିମ ପ୍ରବୃତ୍ତି । ବିଜୟ ଉପଲକ୍ଷେ କିମ୍ବା କୌଣସି ଉତ୍ସବ ଅନୁଷ୍ଠାନରେ କୌତୁକ କ୍ରୀଡ଼ା ନିମନ୍ତେ ମୁହଁରେ ସିଂହ, ବାଘ, ଭାଲୁ, ଗୋରୁ ପ୍ରଭୃତି ଆରଣ୍ୟକ ଗୃହପାଳିତ ପଶୁ ସହିତ ବିଭିନ୍ନ ପକ୍ଷୀ, ଭୂତ ଓ ଦେବତାମାନଙ୍କର ମୁଖା ପ୍ରଚଳନ ଏକ ପରମ୍ପରା ସିଦ୍ଧବସ୍ତୁ ।

ଛଉ ନୃତ୍ୟ ପରିସରଭୁକ୍ତ ଅଞ୍ଚଳରେ ସର୍ବତ୍ର ମୁଖାର ପ୍ରଚଳନ ରହିଅଛି । ଛଉନୃତ୍ୟ-କଳାରେ ମୁଖା ବିଷୟକ ଆଲୋଚନା କାଳରେ ମୁଖା ପ୍ରଚଳନର ଇତିହାସ, ମୁଖା ଗଠନର ଉପାଦାନ, ନିର୍ମାଣ ଓ ସଜ୍ଜା ଶୈଳୀ, ମୁଖାର ବିବର୍ତ୍ତନ ଭିତ୍ତିକ ନିରୀକ୍ଷା ସହ ଶିଳ୍ପର ଭବିଷ୍ୟତ ସମ୍ପର୍କରେ ଆକଳନ କରିବା ବର୍ତ୍ତମାନ ପ୍ରବନ୍ଧର ଆଭିମୁଖ୍ୟ ।

ଛଉ ନୃତ୍ୟ ପରିବ୍ୟାପ୍ତ ଅଞ୍ଚଳରେ ମୁଖା ପ୍ରଚଳନର ପରମ୍ପରା ଅତି ପ୍ରାଚୀନ । କେତେକ ମୁଖ୍ୟ ସ୍ଥାନର ବିବର୍ତ୍ତନର ଧାରା ସମ୍ପର୍କୀୟ ତଥ୍ୟ ଉପଲବ୍ଧ ହେଉଥିଲେ ହେଁ କାଳାନୁକ୍ରମିକ ଐତିହାସିକ ବିବରଣୀ ମିଳେନାହିଁ । ସରେଇକଳା (ସିଂହଭୂମି, ବିହାର), ବାରିପଦା (ମୟୂରଭଞ୍ଜ, ଓଡ଼ିଶା), ଓ ବାଗମୁଣ୍ଡି (ପୁରୁଲିଆ, ପଃ ବଙ୍ଗ) ଛଉ ନୃତ୍ୟ କଳାର ତିନୋଟି ପ୍ରଧାନ ସ୍ଥାନ । ବାରିପଦା ଛଉ ନୃତ୍ୟରେ ମୁଖାର ବ୍ୟବହାର ନାହିଁ ।

ବାରିପଦା ବ୍ୟତୀତ ମୟୂରଭଞ୍ଜର କେତେକ ଅଞ୍ଚଳରେ ଏହି ନୃତ୍ୟ କଳାରେ ମୁଖା ବ୍ୟବହୃତ ହେଉଥିବାର ଦେଖାଯାଏ/ ପୁରୁଲିଆ ଓ ସରେଇକଳାରେ ମୁଖା ଏକ କ୍ଷୁଦ୍ର ଶିଳ୍ପ ରୂପେ ଗଢ଼ି ଉଠିଛି । ଏ ସ୍ଥାନମାନଙ୍କରେ ମୁଖାର ଗଠନ ଓ ବିନ୍ୟାସ ହେଉଅଛି । ଉପରୋକ୍ତ ସ୍ଥାନ ସମୂହ ରାଜନୈତିକ ଦିଗରୁ ବିହାର, ଓଡ଼ିଶା ଓ ବଙ୍ଗଳା ଏପରି ତିନୋଟି ରାଜ୍ୟରେ ଅବସ୍ଥିତ ହୋଇଥିଲେହେଁ ଏହା ପ୍ରାକୃତିକ ଓ ଭୌଗୋଳିକ ଭାବରେ ଏକ, ଅବିଭକ୍ତ ଓ ପରସ୍ପର ସନ୍ନିହିତ ଅଞ୍ଚଳ । ସୈନ୍ଧବଗାଙ୍ଗେୟ ସମତଳ ଭୂମିରୁ ଆରମ୍ଭ ହୋଇ ଉତ୍ତରରେ ପୁରୁଲିଆ, ପୂର୍ବରେ ମେଦିନୀପୁର ଜିଲ୍ଲାର ରୂପନାରାୟଣ ନଦୀର ପଶ୍ଚିମ ପାର୍ଶ୍ୱ ଦେଇ ନୀଳଗିରି ମୟୂରଭଞ୍ଜ, କେନ୍ଦୁଝର, ବଣାଇ, ତାଳଚେର, ଢେଙ୍କାନାଳ, ହିନ୍ଦୋଳ, ସରେଇକଳା, ଖରସୁଆଁ, ସିଂହଭୂମି ଏବଂ ଛୋଟ ନାଗପୁର ମାଳଭୂମି ଅନ୍ତର୍ଗତ ସମତଳ ଅଞ୍ଚଳ ପର୍ଯ୍ୟନ୍ତ ବିସ୍ତୃତ । ଏହା ଘନ ଅରଣ୍ୟ ପୂର୍ଣ୍ଣ, କଙ୍କରିଳ, ଲାଲମୃତ୍ତିକା, ଛୋଟ ପାହାଡ଼ ଓ ଗିରି ନଦୀ ବେଷ୍ଟିତ, ଏ ଅଞ୍ଚଳର ମୁଖ୍ୟ ଅଧିବାସୀ ହେଲେ କୁଡୁମୀ, ଭୂମିଜ, ଭୂୟାଁ, ବାଥୁଡ଼ି, ପୁରାଣ, ସାନ୍ତାଳ, ହୋ ପ୍ରଭୃତି ବହୁ ଜାତି ଓ ଗୋଷ୍ଠୀର ଲୋକ । ବନାଞ୍ଚଳ ଅଧିବାସୀମାନଙ୍କର ଜୀବନ ଯାପନ ପ୍ରଣାଳୀ କଷ୍ଟକର ହେଲେ ହେଁ ସାମାଜିକ ଆମୋଦ ଉତ୍ସବ ଅନୁଷ୍ଠାନ ପ୍ରଭୃତିରେ ନୃତ୍ୟ ଓ ଗୀତ ପ୍ରଚଳିତ । ନୃତ୍ୟରେ ମୁଖା ପ୍ରଚଳନ ସ୍ୱାଭାବିକ । ପୁରୁଲିଆ/ମାନଭୂମ ସିଂହଭୂମ ସମେତ ମୟୂରଭଞ୍ଜର ବାମନଘାଟୀ, ପାଞ୍ଚପୀଢ଼ ଅଞ୍ଚଳରେ ମୁଖା ନୃତ୍ୟ ପ୍ରଚଳିତ । ଉପରୋକ୍ତ ଅଞ୍ଚଳର ବିଭିନ୍ନ ସ୍ଥାନରେ ବିବାହ ପ୍ରଭୃତି ସାମାଜିକ ଉତ୍ସବମାନଙ୍କରେ ମୁଖା ଲଗାଇ ନାଚ ହେଉଥିବାର ଦେଖାଯାଏ ।

ମୁଖାର ପ୍ରତିଶବ୍ଦ ଭାବେ ମହାଁ, ମୁହାଁ, ମହଡ଼ା, ମୁଖୋସ ପ୍ରଭୃତି ଶବ୍ଦମାନ ପ୍ରଚଳିତ । ସମଗ୍ର ଅଞ୍ଚଳରେ ଛଉ 'ଛ' ଛୋ ଶବ୍ଦ ମୁଖା ଅର୍ଥରେ ବ୍ୟବହୃତ ହୁଏ । ଇଂରେଜୀ "ମାସ୍କ"(Mask) ଶବ୍ଦର ପ୍ରତିଶବ୍ଦ ରୂପେ ଉପରୋକ୍ତ ସବୁ ଶବ୍ଦର ଅର୍ଥଗତ ସାମଞ୍ଜସ୍ୟ ରହିଅଛି ।

ମୟୂରଭଞ୍ଜରେ ଆଗରୁ ରରୁଆ, ଗଡ଼ସାହି, ଚିଙ୍ଗି, ଚିହ୍ନା, କୋଷ୍ଠା ଆଦି ଅଞ୍ଚଳରେ ମୁଖା ନିର୍ମିତ ଓ ବ୍ୟବହୃତ ହେଉଥିବାର ଜଣାଯାଏ । ଏ ସବୁ ସ୍ଥାନରେ ମୁଖା ନିର୍ମାଣ ନିମନ୍ତେ ସିଂହଭୂମି/ସରେଇକଳାର କୁଶଳୀ କାରିଗରମାନେ ଆସୁଥିଲେ ।

ତୁମରି ଚରଣେ କୋଟିଏ ପ୍ରଣତି
ସରଗରେ ଥାଇ ଦିଅ ହେ ଆଶୀଷ
ଏତିକି କରୁଛୁ ତୁମ ପଦେ ଅଳି
ତୁମରି ସ୍ୱପ୍ନର ସୁନେଲୀ ଉତ୍କଳ
ଯାହା ଭାବିଥିଲ ସେ ଦିନର ସେହି
ସେ ସପନ ଆଜି ହୋଇଛି କି ସତ
ନେତାଟିଏ ଯେବେ ଖୋଜା ପଡୁଥିଲା
ଆଜି ନେତାଙ୍କର ଅଭାବ ନାହିଁତ
ଆଜି ତୁମ କଥା ମନେ ପଡ଼େ–

ଡାକୁଛୁ ଆଜି ଏ ପବିତ୍ର ଦିନେ
ସଦ୍‌ବୁଦ୍ଧି ଯାଚୁ ଓଡ଼ିଆ ପ୍ରାଣେ–
ଆସହେ ଓଳ୍ହାଇ ଓଡ଼ିଶା ଭୂମେ
ନୟନ ଯୁଗଳେ ଦେଖିବ ତୁମେ–
ବନ୍ଦୀଶାଳାରେ ମଉନେ ବସି
କିଂବା ଯାଉଅଛି ମାଟିରେ ମିଶି ?–
ମିଳୁତ ନଥିଲେ ଗୋଟିଏ ନେତା
ନେତା କଥା ଆମେ କରିନୁ ଚିନ୍ତା–

ଆଉଥରେ ତୁମେ ବୁଲି ଆସନ୍ତ କି, ତୁମ ଏ ଓଡ଼ିଶା ଆଡ଼େ ॥୪॥

ତଥାପି ଅଭାବ ରହି ଯାଉଅଛି
ଆଉ ଥରେ ତୁମେ ଆସ ଅବତରୀ
ଯେଉଁ ଭାଷା ପାଇଁ ଲଢ଼ିଥିଲ ତୁମେ
ସେ ଭାଷା କହିବା, ଲେଖିବା ପାଇଁ କି
ଏମିତି କାହିଁକି ହେଲା ତୁମେ କୁହ
ଭୁଲିଲା କି ଜାତି ପୁରୁବ ମହିମା
ଆଜି ଏ ସଙ୍କଟେ ତୁମରି ଅଭାବ
ଆଉ ଥରେ ଆସି ଏ ଜାତି କାନରେ
ଆଜି ତୁମ କଥା ମନେ ପଡ଼େ–

ତୁମ ପରି ନେତା ପାଇବା ପାଇଁ
ସ୍ୱଜାତି ପୀରତି ଦିଅ ବୁଝାଇ–
ସାଥେ ଧରି ତୁମ ଲଢୁଆ ସାଥୀ
କୁଣ୍ଠା କରେ କିଆଁ ଓଡ଼ିଆ ଜାତି ??–
ଶୁଣିଲେ ଏ କଥା ଦହୁଚି ଛାତି
କରି ଥବା ସେ ବିଦେଶୀ ପୀରତି–??–
ରହି ଯାଉଅଛି ହେ ମହାରଥୀ ।–
କହିଦେଇ ଯାଅ ସ୍ୱଜାତି–ପ୍ରୀତି–

ଆଉଥରେ ତୁମେ ବୁଲି ଆସନ୍ତ କି, ତୁମ ଏ ଓଡ଼ିଶା ଆଡ଼େ ॥୫॥

---

ପଦ୍ମସାହି,
ଆଠଗଡ଼ ଟାଉନ୍, କଟକ-୭୫୪୦୨୯ ।



ଭୁବନେଶ୍ୱରଠାରେ ଅନୁଷ୍ଠିତ କରାଟେ ଖେଳ ପ୍ରଦର୍ଶନକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଦେଖୁଛନ୍ତି ।

ପୁରୁଷ, ନାରୀ, ପିଲା, ବୁଢ଼ା, ବୁଢ଼ୀ ଯେଉଁମାନେ ମୁଖା ନିର୍ମାଣ ଓ ସଜା କରି ଜାଣନ୍ତି, ସମସ୍ତେ ଏଥିରେ ଲାଗନ୍ତି । ଦେବ ଦେବୀଙ୍କର ମୁଖା ନିର୍ମାଣ ଓ ସଜା ସମ୍ବନ୍ଧରେ କୌଣସି ବିଶେଷ ନିୟମ ନିଷେଧ ପ୍ରଚଳନ ନାହିଁ ।

ପୁରାଣ, ଶାସ୍ତ୍ର, ଇତିହାସ ପ୍ରାକୃତିକ ବିଷୟ ବସ୍ତୁକୁ ନେଇ ମୁଖା ସଜ୍ଜିତ ହୁଏ । ମୁଖା ନିର୍ମାଣ ଓ ସଜା ବେଳେ ଶିଳ୍ପୀ ଦର୍ଶକଙ୍କ ଚେତା ଓ ସମୟର ସୁବିଧାକୁ ରକ୍ଷା କରିଥାନ୍ତି । ଶିଳ୍ପୀମାନେ ମୁଖା ତିଆରି କରିବାରେ ସାଧାରଣତଃ ନିଜସ୍ୱ ଧାରଣା ପ୍ରୟୋଗ କରିଥାନ୍ତି । ଅସୁର, ଭୂତ, ପ୍ରେତ ଓ ଅରଣ୍ୟ ପଶୁପକ୍ଷୀଙ୍କର ମୁଖା ନିର୍ମାଣ ନିମନ୍ତେ ପ୍ରକୃତି ପର୍ଯ୍ୟବେକ୍ଷଣ ଓ ସାଧାରଣ ଜ୍ଞାନ ପ୍ରୟୋଜନ ହୁଏ । ମୁଖା ନିର୍ମାଣ ପୂର୍ବରୁ ମୁଖା ନିର୍ମାତା ସାଧାରଣତଃ ମୁଖା ସମ୍ପର୍କରେ ଅନ୍ୟ ନିର୍ମାତାମାନଙ୍କୁ ପ୍ରାଥମିକ ଧାରଣା ଦିଅନ୍ତି । ସମୟ ବିଶେଷରେ ନିର୍ମାତା ପ୍ରବୀଣ ଶିଳ୍ପୀଙ୍କୁ ପଚାରି ବୁଝି ନିଅନ୍ତି ।

ମୁଖା କୌଣସି ଚରିତ୍ରର ପ୍ରତିନିଧିତ୍ୱ କରେ । ସାଧାରଣତଃ ଗୋଟିଏ ଚରିତ୍ର ନିମନ୍ତେ ଗୋଟିଏ ମୁଖା ନିର୍ଦ୍ଦିଷ୍ଟ ଥିଲା ବେଳେ, କେତେକ ମୁଖା ଏକାଧିକ ଚରିତ୍ର ପାଇଁ ବ୍ୟବହୃତ ହୋଇଥାଏ । ଉଦାହରଣ ସ୍ୱରୂପ କାର୍ତ୍ତିକ ମୁଖା ଇନ୍ଦ୍ର ବଳରାମ ଓ ପୌରାଣିକ ରାଜାମାନଙ୍କ ବ୍ୟବହାରରେ ଅସୁବିଧା ହୁଏ ନାହିଁ ।

ବାରିପଦା ଛଉ ନାଚ ଶୈଳୀ ବ୍ୟତୀତ ସରାଇକଳା ଓ ପୁରୁଲିଆ/ମାନଭୂମ୍ ଛଉନାଚରେ ମୁଖା ଅବିଚ୍ଛେଦ୍ୟ ଅଂଶ । ମୁଖା ବ୍ୟବହାର ଫଳରେ ଆସରରେ ଚରିତ୍ରର ଉପସ୍ଥିତି ଅଧିକ ସ୍ପଷ୍ଟ ହୁଏ । ଦର୍ଶକ ଚରିତ୍ରର ସତ୍ତାକୁ ନିବିଡ଼ ଭାବରେ ଉପଲବ୍ଧି କରିପାରେ । ମୁଖା ପିନ୍ଧିଲେ ଚରିତ୍ର ଉପଯୋଗୀ ଭାବ ନର୍ତ୍ତକର ମନ ଭିତରେ ସଞ୍ଚାରିତ ହୋଇଯାଏ । ମନ ଓ ଶରୀର ଉଦ୍ଦୀପିତ ହୁଏ । ପୃଥିବୀର ଅନ୍ୟ ସ୍ଥାନମାନଙ୍କରେ ମୁଖା ବ୍ୟବହାର ପରି ପୂର୍ବ ଭାରତର ପୁରୁଲିଆ/ମାନଭୂମି, ସରାଇକଳା, ମୟୂରଭଞ୍ଜରେ 'ଛଉ/ଛୌ'; ମାଲଦହ ଜିଲ୍ଲାର 'ଗମ୍ଭୀରା'; ଆସାମର 'ଭୁଟ' ନାଚ ପ୍ରଭୃତିରେ ମୁଖା ଏକ ଅପରିହାର୍ଯ୍ୟ ଅଂଶ । ଝାଡ଼ଗ୍ରାମ ଓ ଧଳଭୂମ ଛଉ/ଛୌ ନାଚରେ 'ପରଭା କାଠିଆ'ର ପ୍ରଚଳନ ଅଛି । ଆଗରୁ ମୟୂରଭଞ୍ଜ ଅଞ୍ଚଳରେ 'ପରଭା କାଠିଆ'ର ପ୍ରଚଳନ ଥିଲା ।

କାଠରେ ନିର୍ମିତ ବିଭିନ୍ନ ଦେବ ଦେବୀଙ୍କର ମୂର୍ତ୍ତି ପରଭା 'କାଠିଆ' ରୂପେ କଥିତ । ଏଥିରେ ଶରୀରର ଛାତି ପାଖରୁ ମସ୍ତକ ପର୍ଯ୍ୟନ୍ତ ଅଂଶ କାଠରେ ନିର୍ମିତ । ଦେବ ଦେବୀ, ଅସୁର ପ୍ରଭୃତିଙ୍କର ଅତିମାନବିକ ଶାରୀରିକ ଅଂଶ ବିଶେଷ ସବୁ (ଯେମିତି ଚତୁର୍ଭୁଜ, ଷଡ଼ଭୁଜ, ଦଶଭୁଜା ଦିବ୍ୟବାହୁ, ଦଶଶିର ପ୍ରଭୃତି) ଶିଳ୍ପୀ ପରି ହାଲୁକା କାଠରେ ନିର୍ମିତ ହୋଇ ନୃତ୍ୟ ନାଟ୍ୟରେ ପ୍ରଦର୍ଶିତ ହୋଇଥାଏ । ଏସବୁ ମୁଖାର ଅନ୍ୟ ଏକ ରୂପ ବୋଲି ମନେ କରାଯାଇ ପାରେ । ଏତଦ୍ ବ୍ୟତୀତ ପୁରାତନ ଦେଶୀୟ ରାଜ୍ୟ ଯଥା : ନୀଳଗିରି, କେନ୍ଦୁଝର, ବଣାଇ, ହିନ୍ଦୋଳ, ତାଳଚେର, ଖରସୁଆଁ ଅଞ୍ଚଳର ଛଉର କେତେକ ନାଚରେ ମୁଖା ବ୍ୟବହୃତ ହୁଏ ।

ନାଚରେ ବ୍ୟବହୃତ ମୁଖାଗୁଡ଼ିକ ସଂରକ୍ଷିତ ହୁଏ ନାହିଁ । ମୁଖା ନିର୍ମାଣ ପରେ ନିର୍ମାତା କାନ୍ଥରେ କଣ୍ଟା ଦ୍ୱାରା କିମ୍ବା ଦଉଡ଼ିରେ ବାନ୍ଧି ଝୁଲାଇ ଦିଅନ୍ତି । ପୁରୁଲିଆରେ ଛଉ ଦଳମାନଙ୍କରେ ବ୍ୟବହୃତ ମୁଖାସବୁ ଆସରରେ ନାଚ ପରେ କାଠ/ବାଉଁଶରେ ନିର୍ମିତ ଶିଡ଼ିରେ ତଳୁ ଉପର ପର୍ଯ୍ୟନ୍ତ ଥାକ ଥାକ କରି ବାନ୍ଧି ଦେଇ ଖରାରେ ଶୁଖାଇ ଦିଅନ୍ତି । ଖରାରେ ଶୁଖିଗଲାପରେ ଘର ଭିତରେ ସେହି ପରି ରଖାଯାଏ । ସରାଇକଳାରେ ନାଚ ପରେ ମୁଖା ସବୁ ଖରାରେ ଶୁଖାଇ ବଡ଼ ବଡ଼ କାଠ ବା ଟିଣ ବାକ୍ସ ମଧ୍ୟରେ କାଗଜ ଗୁଡ଼ାଇ ରଖାଯାଏ । ମୟୂରଭଞ୍ଜର ଶିରାକୁଳୀରେ ମୁଖାସବୁ ବାକ୍ସରେ ରଖାଯାଇ ଥାଏ । ବର୍ତ୍ତମାନ ମୁଖାଗୁଡ଼ିକ କାଗଜ, କନା, ଅଠା, ମାଟିରେ ତିଆରି ହେଉଥିବାରୁ ବେଶୀଦିନ ବ୍ୟବହାର ଉପଯୋଗୀ ହୁଏ ନାହିଁ । ଅତିବେଶୀରେ ପଚାଶ/ଷାଠିଏ ଥର ବ୍ୟବହାର ପରେ ଏସବୁ ଅନୁପଯୋଗୀ ହୋଇଯାଏ ।

ମୁଖା ନିର୍ମାତାମାନଙ୍କର ବର୍ତ୍ତମାନର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନୁହେଁ । ମୁଖା ବିକ୍ରୟଲବ୍ଧ ପରିବାର ପ୍ରତି ପୋଷଣରେ ବ୍ୟୟିତ ହୁଏ । ପୁରୁଲିଆରେ ଅନେକ ଭୂମିହୀନ ଶିଳ୍ପୀ ମୁଖା ନିର୍ମାଣକୁ ଏକ କ୍ଷୁଦ୍ର ଶିଳ୍ପ ରୂପେ ଆଶ୍ରୟ କରି ଜୀବିକାର୍ଜନ କରୁଛନ୍ତି । କେତେକ କ୍ଷେତ୍ରରେ ଅଶିକ୍ଷିତ ଅସଚେତନ ଶିଳ୍ପୀମାନେ ବ୍ୟବସାୟୀମାନଙ୍କର ମନ୍ଦ ଅଭିପ୍ରାୟର ଶୀକାର ହୋଇଥାନ୍ତି । ଏହି ବ୍ୟବସାୟକୁ ଏକ ସୌଖୀନ ଅର୍ଥକାରୀ କ୍ଷୁଦ୍ର କୁଟୀର ଶିଳ୍ପ ରୂପେ ପ୍ରତିଷ୍ଠା କରିବା ପାଇଁ ଶିଳ୍ପୀମାନେ ଆଗେଇ ଆସିବା ଆବଶ୍ୟକ ।

---

ଗ୍ରା/ପୋ: ଅ:—ଧର୍ମପୁରା, ଭାୟା—କୋଷ୍ଠା,
ଜିଲ୍ଲା—ମୟୂରଭଞ୍ଜ—୭୫୭୦୮୪ ।



କେବେ କେବେ ଏ ସ୍ଥାନମାନଙ୍କରୁ କେହି ବ୍ୟକ୍ତି ଯାଇ ସେଠାରୁ ନିର୍ମାଣ କୌଶଳ ଶିଖି ଆସି ଏଠାରେ ମୁଖା ତିଆରି କରୁଥିଲେ। ବର୍ତ୍ତମାନ ମୟୂରଭଞ୍ଜର ରାରୁଆଁ ଥାନା ଅନ୍ତର୍ଗତ ଶିରାକୁଳୀ ଗ୍ରାମରେ ଦୁଇ ଜଣ ବାଥୁଡ଼ି ସମ୍ପ୍ରଦାୟର ବ୍ୟକ୍ତି ମୁଖା ନିର୍ମାଣ କରୁଛନ୍ତି। ସେଠାର ଶ୍ରୀ ବାଣେଶ୍ୱର ନାୟକ ଜଣେ ମୁଖା ନିର୍ମାତା ରୂପେ ସୁପରିଚିତ। ମୟୂରଭଞ୍ଜର କରଞ୍ଜିଆ ନିକଟବର୍ତ୍ତୀ ଜଡ଼ ସାହିରେ ପୂର୍ବକାଳର ଛଉରେ ବ୍ୟବହୃତ କାଠ ମୁଖା ରହିଥିବାର ଦେଖିହୁଏ। ଏଠାରେ ପୂର୍ବେ କାଠ ବ୍ୟତୀତ ଲାଉର ମୁଖା ପ୍ରଚଳନ ଥିବାର ଜଣାଯାଏ।

ପୁରୁଲିଆ ଛଉରେ ବ୍ୟବହୃତ ମୁଖାଗୁଡ଼ିକ ମୁଖ୍ୟତଃ ବାଗମୁଣ୍ଡି ଥାନା ଅନ୍ତର୍ଗତ ଚେଡ଼ିଦା ଗ୍ରାମ ଓ ଜୟପୁର ଥାନା ଅନ୍ତର୍ଗତ ଡୁମୁରଡ଼ିହ ଗ୍ରାମରେ ନିର୍ମିତ ହୁଏ। ଡୁମୁରଡ଼ିହର ମୁଖା ନିର୍ମାତା ମାନେ ଶହେ ବର୍ଷ ଅତୀତରେ ଚେଡ଼ିଦା ଗ୍ରାମରେ ବାସ କରୁଥିଲେ ଓ ମୁଖା ତିଆରି କରୁଥିଲେ। ଘଟଣା କ୍ରମେ ସେ ଡୁମୁରଡ଼ିହ ଗ୍ରାମର ବାସିନ୍ଦା ହେଲେ ଏବଂ ସେଠାରେ ମୁଖା ନିର୍ମାଣ ଆରମ୍ଭ କଲେ। ସୁତରାଂ, ମୂଳତଃ ପୁରୁଲିଆ ମୁଖା ଶିଳ୍ପ ଚେଡ଼ିଦା କେନ୍ଦ୍ରର ନିର୍ମାଣ ଓ ସଜ୍ଜା ଶୈଳୀ ଅନୁସରଣ କରେ। ଏ ସ୍ଥାନରେ ପୂର୍ବେ ଶିମୁଳୀ କାଠ ଓ ଲାଉରେ ମୁଖା ନିର୍ମିତ ଓ ବ୍ୟବହୃତ ହେଉଥିଲା।

ସରାଇକେଲା ଛଉ ନାଚରେ ପୂର୍ବେ କାଠ, କଖାରୁ ଓ ଲାଉରେ ନିର୍ମିତ ମୁହାଁ ବ୍ୟବହୃତ ହେଉଥିଲା। ବାଉଁଶର ଟୋକେଇ, କୁଲା, ପାଛିଆଗୁଡ଼ିକ ମଧ୍ୟ ମୁଖା ରୂପେ ସଜାଇ ବ୍ୟବହୃତ ହେଉଥିବାର ଜଣାଯାଏ। ମାଙ୍କଡ଼ ମୁହଁର ଶୁଖିଲା ଛାଲକୁ ମୁହଁ ରୂପେ ବ୍ୟବହାରର ପ୍ରଚେଷ୍ଟା ବିଷୟରେ ଏବେ ବି ଅନେକଙ୍କ ମୁହଁରୁ ଶୁଣାଯାଏ।

ମହାରାଜାଙ୍କ ଉଦିତ ନାରାୟଣଙ୍କ ସମୟରେ ରାଜପୁରୋହିତ ବଳରାମ ପାଣିଗ୍ରାହୀ ଓ ତାଙ୍କ ପୁଅମାନେ ମୁଖା ତିଆରି କରୁଥିଲେ। ପରବର୍ତ୍ତୀ ସମୟରେ ତାଙ୍କର ଶିଷ୍ୟ ପ୍ରସନ୍ନ କୁମାର ମହାପାତ୍ର ଓ ତାଙ୍କ ବଂଶଧର ଗଣ ମୁଖା ନିର୍ମାଣ କଲେ। 'ଶିଳ୍ପ ଗୁରୁ' ପ୍ରସନ୍ନ କୁମାରଙ୍କ ନିର୍ମିତ ମୁଖା ଆନ୍ତର୍ଜାତିକ ମୁଖା ପ୍ରଦର୍ଶନୀ, ଟୋକିଓ ୧୯୬୫ରେ ପ୍ରଦର୍ଶିତ ହୋଇଥିଲା।

ମୁଖା ନିର୍ମାଣ କୌଣସି ଏକ ନିର୍ଦ୍ଦିଷ୍ଟ ଜାତିର ଲୋକଙ୍କର କଳା ନୁହେଁ। ସରାଇକେଲାରେ କଂସାରୀ, ବ୍ରାହ୍ମଣ, ବାରିକ ଓ କ୍ଷତ୍ରିୟ ପ୍ରଭୃତି ଜାତିର ଲୋକେ ମୁଖାତିଆରି କରୁଥିଲେ। ମୟୂରଭଞ୍ଜରେ ବାଥୁଡ଼ି, ମହାନ୍ତ, ବଣିଆ, ଭୂୟାଁ ପ୍ରଭୃତି ଓ ପୁରୁଲିଆରେ ବ୍ରାହ୍ମଣ, ଗୁହିରାମୀ ଓ ସୂତ୍ରଧର ପ୍ରଭୃତି ଜାତିର ଲୋକେ ମୁଖା ତିଆରି କରୁଥିଲେ। ଏବେ ମଧ୍ୟ ଏ ଧାରା ପ୍ରଚଳିତ।

ବର୍ତ୍ତମାନ ମୁଖା ନିର୍ମାଣ ନିମନ୍ତେ ବିଭିନ୍ନ ଅଦରକାରୀ କାଗଜ, ଛିଣ୍ଡାଲୁଗା, ଲୁହାତାର, ଅଠା, ପ୍ଲାଷ୍ଟିକ ଓ କାଗଜ ଫୁଲ, ବିଭିନ୍ନ ପ୍ରକାର ରଙ୍ଗ, ବେଙ୍ଗଙ୍ଗ ପକ୍ଷୀର ପର ପ୍ରଭୃତି ସାମଗ୍ରୀ, କାଠପଟା, କରଣୀ, ଡାମ୍ପୀ ଇତ୍ୟାଦି ଉପକରଣ ଲୋଡ଼ା ହୁଏ।

ପ୍ରଥମେ ନଦୀ କିମ୍ବା ନାଳ କୂଳରୁ ବାଲିମିଶା ଚିକିଟାମାଟି ଆଣି ପାଣି ମିଶାଇ ଚକଟି, ଚକଟି ଗୋଡ଼ି ପ୍ରଭୃତି ବାଛି ଦେଇ ମୁଲାୟମ୍ କରାଯାଏ। ଦୁଇ ଫୁଟ୍ ଲମ୍ବ ଓ ଦେଢ଼ ଫୁଟ ଓସାର କିମ୍ବା ଦେଢ଼ ଫୁଟ ଲମ୍ବ ଓ ଏକ ଫୁଟ ଓସାର କାଠ ପଟାଉପରେ ଛାଞ୍ଚ ତିଆରି ହୁଏ। ଖୁଉଳ ଗୁଣ୍ଡ କରି ଫୁଟାଇ ଅଠା ତିଆରି କରି ଛିଣ୍ଡା ମୋଟା କାଗଜ ଉପରେ ଅଠା ଦେଇ ଛାଞ୍ଚ ଉପରେ ଚିଟେଇ ଦିଆଯାଏ। ତାହା ଉପରେ ନରମ ଓ କାଦୁଅ ମଣ୍ଡ ପତଳା କରି ଲେପି ଦିଆଯାଏ। ତା ଉପରେ ଛିଣ୍ଡାକନା ଦେଇ ଚିକିଟା ମାଟିର ପ୍ରଲେପ ଦିଆଯାଏ। ତାପରେ କାଠର ଡାମ୍ପୀରେ ପାଲିସ୍ କରାଯାଏ। ମୁଖା ଉପରେ ପୁରୁଣା ଛିଣ୍ଡା କନା ଦେବାର କାରଣ ହେଲା ଏହା ଭଲଭାବରେ ଅଠା ଧରେ। ନୂଆ କପଡ଼ାରେ ଭଲ ଅଠା ଧରେ ନାହିଁ। ପରେ ଖରାରେ ଭଲ କରି ଶୁଖେଇ ଦିଆଯାଏ। ମୁଖା ଶୁଖିଗଲା ପରେ ପ୍ରସ୍ତୁତକାରୀ ଭୂମିରେ ପାଦ ଲମ୍ବାଇ ବସି କୋଳ ଉପରେ ଛାଞ୍ଚଟି ରଖି ଛୋଟ ଲୁହା ଖଣ୍ଡଟି ଓ ହାତୁଡ଼ି ସାହାଯ୍ୟରେ ଆସ୍ତେ ଆସ୍ତେ କାଟି ମୁଖାଟିକୁ ଛାଞ୍ଚରୁ ବାହାର କରନ୍ତି। ମୁଖା ବାହାର କଲାପରେ ରଙ୍ଗ କାମ ହୁଏ। ପ୍ରଥମେ ଖଡ଼ିମାଟି ଅଥବା ଚୂନର ପ୍ରଲେପ ଦିଆ ଯାଏ। ଚୂନ ଶୁଖିଗଲା ପରେ ବିଭିନ୍ନ ଚରିତ୍ର ଅନୁଯାୟୀ ଭିନ୍ନ ଭିନ୍ନ ରଙ୍ଗ ଲେପନ କରାଯାଏ। ଟିକିଲି, କଞ୍ଚିମାଳ, ପ୍ଲାଷ୍ଟିକ, କାଗଜ ଫୁଲ, ସଲ୍ମତାର, ରଙ୍ଗ ବେରଙ୍ଗ ଚଢ଼େଇ ପର ମୁଖା ସଜ୍ଜା ନିମନ୍ତେ ବ୍ୟବହୃତ ହୁଏ। କେଶ ନିମନ୍ତେ ନଳିତା ପାଟ ବ୍ୟବହୃତ ହୁଏ। ଅତୀତର ମୁଖାଗୁଡ଼ିକର ସଜ୍ଜା ସରଳ ଓ ସାଧାରଣ ଥିଲା। ବର୍ତ୍ତମାନ ପରି ଏତେ ବର୍ଣ୍ଣାଢ୍ୟ ପରିପାଟି ନ ଥିଲା।

ସଜ୍ଜା ସମୟରେ ମୁଖାର ଦୁଇ ପଟ କାନ ତଳ କଣାରେ ଦୁଇଗୋଟି ସୁତୁଲି ବାନ୍ଧି ଦିଆଯାଏ। ନୃତ୍ୟକାରୀ ମୁଖା ପିନ୍ଧିଲା ପରେ ବେକର ପଛ ପାଖେ ସୁତୁଲିରେ ଗଣ୍ଠି ପଡ଼େ।

ମୁଖାର ଉପରି ଭାଗରେ ମସ୍ତକରେ ମୁକୁଟ ଖଞ୍ଜା ହୁଏ। ଏହା କେବଳ ଉପଯୋଗୀ ଚରିତ୍ରର ମୁଖାମାନଙ୍କରେ ଥାଏ। ମୁକୁଟଗୁଡ଼ିକ ବିଭିନ୍ନ ପକ୍ଷୀର ପର, ମୟୂରଚୂଳ, ଲୁଞ୍ଜ, ଗଡ଼ ଗଡ଼, କଞ୍ଚି, ଶଙ୍ଖ ଜରି, ରଙ୍ଗ କାଗଜ, ସୋଲର ଫଳକ ପ୍ରଭୃତି ସଲ୍ମତାର ପ୍ଲାଷ୍ଟିକ ସୂତା ଓ ଅଠା ସାହାଯ୍ୟରେ ସଜ୍ଜିତ ହୁଏ। ଏ ସବୁ ବିଷୟ ଭାବ ଓ ଚରିତ୍ର ଉପଯୋଗୀ ହୋଇଥାଏ।

ମୁଖାରେ ଚକ୍ଷୁ ଓ ନାସାରନ୍ଧ୍ର ଦୃଶ୍ୟ ଉନ୍ମୁକ୍ତ ଥାଏ। ଏହା ଦ୍ୱାରା ନର୍ତ୍ତକ ଆସରରେ ନିଜର ସ୍ଥିତିକୁ ଦେଖିପାରେ ଓ ଶ୍ୱାସ କ୍ରିୟା ସମ୍ପାଦନ କରିଥାଏ। ଛାଞ୍ଚରୁ ମୁଖା ବାହାର କଲାବେଳେ ପ୍ରସ୍ତୁତ କାରୀ ମୁଖାର ଚକ୍ଷୁ, କର୍ଣ୍ଣ, ନାସିକାରେ ପ୍ରୟୋଜନୀୟ ଛିଦ୍ର ସୃଷ୍ଟି କରିଥାନ୍ତି।

ସାଧାରଣତଃ ସରସ୍ୱତୀ ପୂଜାଠାରୁ ଅର୍ଥାତ୍ ମାଘ ମାସଠାରୁ ମୁଖା ତିଆରି ଆରମ୍ଭ ହୁଏ। ବର୍ଷ ଯାକ ମୁଖା ନିର୍ମିତ ହେଉଥିଲେ ହେଁ ଜ୍ୟେଷ୍ଠ ମାସ ପର୍ଯ୍ୟନ୍ତ ଏହା ପୂର୍ଣ୍ଣ ମାତ୍ରାରେ ଚାଲେ। କନା, ଅଠା, କାଗଜ, ମାଟି, କାଦୁଅ ସହଜରେ ନ ଶୁଖି ସଂକୁଚିତ ହେଉଥିବାରୁ ବର୍ଷାଦିନେ ସାଧାରଣତଃ ମୁଖାତିଆରି ହୁଏ ନାହିଁ। ଟାଣ ଖରା ଅଭାବରେ ଛାଞ୍ଚ ଭିତରେ ମୁଖା ଶୀଘ୍ର ଶୁଖି ଶକ୍ତ ହୁଏ ନାହିଁ। ପ୍ରଥମେ ଗଣେଶ ମୁଖା ତିଆରି କରିବା ଶାସ୍ତ୍ର ସମ୍ମତ ବିଧି। ପରେ ଅନ୍ୟ ମୁଖା ତିଆରି ହୁଏ।

କହିଥିଲେ ଜର୍ମାନୀ ସହାୟତାରେ କେ.ଏଫ୍.ଡବ୍ଲ୍ୟୁ: ଯୋଜନାରେ ୧୦୦ କୋଟି ଟଙ୍କାର ଏକ କଟକ, ପୁରୀ, ବାଲେଶ୍ୱର ଜିଲ୍ଲା ଉଠା ଜଳସେଚନ ବ୍ୟବସ୍ଥାର ଉନ୍ନତି ପାଇଁ ଆରମ୍ଭ କରାଯାଇଛି । ଚାଷୀମାନଙ୍କ ସାହାଯ୍ୟ ସହଯୋଗ ମିଳିଲେ ଗଞ୍ଜାମ ଜିଲ୍ଲାର ଆହୁରି ୧୫/୨୦ଟି ଅଚଳ ପଏଣ୍ଟକୁ କାର୍ଯ୍ୟକ୍ଷମ କରାଯିବ । ଓଡ଼ିଶାରେ ଏହି ଭଳି ୩,୦୦୦ ଅଚଳ ପଏଣ୍ଟ ରହିଛି ।

କାଞ୍ଚିଆପଡ଼ାରେ ମଧ୍ୟ ଏକ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା । ଏହି ଉଭୟ ସଭାରେ ଚାଷୀମାନେ ବର୍ଦ୍ଧିତ ଜଳକର ଅଧ୍ୟକ୍ଷଙ୍କ ଉପସ୍ଥିତିରେ ଜମା କରିଥିଲେ । ଏହି ଅଞ୍ଚଳରେ ବ୍ୟାପକ ଧାନ ଚାଷ ହୁଏ । ଚାଷୀମାନେ ଆଖୁ ଏବଂ ଧାନ ମଧ୍ୟ ଚାଷ କରନ୍ତି । ଅର୍ଥକାରୀ ଫସଲ ଉତ୍ପାଦନ କରି ବହୁ ଅର୍ଥ ଉପାର୍ଜନ କରନ୍ତି । ଉଠା ଜଳସେଚନ ନିଗମର ପରିଚାଳନା ନିର୍ଦ୍ଦେଶକ ଶ୍ରୀ ଏଚ୍. ପି. ରାୟ, ବୈଷୟିକ ନିର୍ଦ୍ଦେଶକ ଶ୍ରୀ ଏଲ୍. କେ. ଚୌଧୁରୀ, ଭୂତଳ ଜଳସମ୍ପଦ ନିର୍ଦ୍ଦେଶକ ଏ. କେ. ପଟ୍ଟନାୟକ ଏବଂ ବ୍ରହ୍ମପୁର ଉଠା ଜଳସେଚନ କାର୍ଯ୍ୟନିର୍ବାହୀ ଯନ୍ତ୍ରୀ ଉପେନ୍ଦ୍ର କୁମାର ସାହୁ ପ୍ରମୁଖ ବହୁ ବିଶିଷ୍ଟ ବ୍ୟକ୍ତିମାନେ ଏହି ସଭାମାନଙ୍କରେ ଯୋଗ ଦେଇଥିଲେ ।

---

ଶ୍ରୀ ପବିତ୍ର ତ୍ରିପାଠୀ ।



ରାଇରଙ୍ଗପୁରଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ ଉତ୍ସବକୁ ବାଣିଜ୍ୟ ଓ ପରିବହନ ମନ୍ତ୍ରୀ ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ଉଦ୍‌ଘାଟନ କରୁଛନ୍ତି । ଉକ୍ତ ଉତ୍ସବରେ ପଞ୍ଚାୟତିରାଜ ମନ୍ତ୍ରୀ ଶ୍ରୀ ଦାମୋଦର ରାଉତ ଉପସ୍ଥିତ ଅଛନ୍ତି ।




## ଜମିରୁ ଫଳୁଛି ସୁନା

ମୋର ଏକ ଖାଲୁଆ ଜମିଥିଲା, ସେଥିରେ ବର୍ଷାଦିନେ ପାଣି ଜମି ରହୁଥିବାରୁ ଭଲ ଫସଲ ହୁଏ ନାହିଁ, କ'ଣ କରିବି ବୋଲି କିଛି ଭାବିପାରୁ ନଥିଲି, ଯୋଗକୁ ଦିନେ ସନ୍ଧ୍ୟାରେ ବ୍ଲକ୍‌ର ବାବୁମାନେ ଆସି ଆମ ଗାଁରେ ଆଇ:ଆର:ଡି:ରେ ଉପକୃତ ବ୍ୟକ୍ତିମାନଙ୍କୁ ଚିହ୍ନଟ କରୁଥାନ୍ତି, ମୁଁ ମଧ୍ୟ ସେଥିରେ ସାମିଲ ହେଲି । ବ୍ଲକ୍‌ର ଏଫ୍:ଇ: ଓ ବାବୁ ସେଦିନ କହିଲେ ଯେଉଁମାନଙ୍କର ଖାଲୁଆ, ସନ୍ତସନ୍ତିଆ ଜମି ଅଛି ସେମାନେ ମାଛଚାଷ ପାଇଁ, ସେଥିରେ ପୋଖରୀ ଖୋଳାଇ ପାରିବେ, ସେମାନଙ୍କୁ ବ୍ୟାଙ୍କ ଜରିଆରେ ୧୪,୧୦୦ ଟଙ୍କା ଋଣ ଦିଆଯିବ । ଏବଂ ୫,୦୦୦ ଟଙ୍କା ଛାଡ଼ ପାଇବେ । ମୁଁ ଆଗ୍ରହ ସହକାରେ ରାଜି ହୋଇଗଲି ।

କିଛି ଦିନପରେ କାନଡ଼ା ବ୍ୟାଙ୍କରୁ ୧୪,୧୦୦ ଟଙ୍କା ଋଣ ଆଣି ପୋଖରୀଟିଏ ଖୋଳାଇଲି, ଏହା ପ୍ରାୟ ଅଧ ଏକର ବିଶିଷ୍ଟ ହେବ, ବ୍ଲକ୍‌ର ଏଫ୍:ଇ:ଓ:ଙ୍କ ସହିତ ପରାମର୍ଶ କରି ଭଲ ଜାତିର ଛାଡ଼ିଲି ମଝିରେ ଗୋବର, ସାର, ଦେଉଥାଏ । ସେହି ପ୍ରଥମ ବର୍ଷ ସନ ୧୯୯୧-୯୨ରେ ମୁଁ ହାରାହାରୀ ୩୮୦ କି:ଗ୍ରା ମାଛ ପାଇଲି ଏବଂ ହାରାହାରୀ ୬,୫୦୦ ଟଙ୍କା ପାଇଲି । ମୋତେ ବଡ଼ ଖୁସି ଲାଗିଲା । ଯେଉଁ ଜମିରେ ମୁଣ୍ଡ ପିଟି ଦେଲେ ଧାନ ୧,୦୦୦ ଟଙ୍କାର ହେଉ ନଥିଲା ସେହିଥିରୁ ଆଦାୟ ହେଲା ୬,୫୦୦ ଟଙ୍କା ।

ଇତି ମଧ୍ୟରେ ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥା ଜରିଆରେ ମୁଁ ମାଛ ବିଷୟରେ ତାଲିମ ନେଇଗଲି, ପର ବର୍ଷ ଅର୍ଥାତ୍ ସନ ୧୯୯୨-୯୩ରେ ମଧ୍ୟ ମାଛ ଚାଷ କଲି । ସେଥିରେ ମଧ୍ୟ ଚିଙ୍ଗୁଡ଼ି ଜାତିକ ଛାଡ଼ିଲି, ଗତ ଖରାଦିନରେ ସେଥିରୁ ମୁଁ ୪୮୫ କି:ଗ୍ରା: ମାଛ ୨୭ କି:ଗ୍ରା: ଚିଙ୍ଗୁଡ଼ି ପାଇଛି । ମାଛ ଓ ଚିଙ୍ଗୁଡ଼ି ବିକି କରି ମୁଁ ୯,୮୫୦ ଟଙ୍କା ପାଇ ମୋର ବ୍ୟାଙ୍କ ଋଣ ଯଥାରୀତି ସୁଝି ଦେଉଛି । ଆଶା କରୁଛି ଆଗାମୀ ଦୁଇବର୍ଷରେ ସମସ୍ତ ଋଣ ସୁଝି ଦେବି । ଇତି ମଧ୍ୟରେ ପୋଖରୀ ହୁଡ଼ାରେ ୪୦ ଗୋଟି ନଡ଼ିଆ ଗଛ ଲଗାଇଲିଣି ।

ଚାଷୀ ହିସାବରେ ଯେଉଁ ଜମି ଅଧିକ ଜଳ ଲାଗି ଫସଲ ଅମଳ ହେବାରେ ମୋତେ ଉପହାସ କରୁଥିଲା ସେଥିରୁ ଆଜି ସୁନା ଫଳୁଛି କହିଲେ ଚଳେ, ଦିନଥିଲା ସେ ଜମିକୁ ମୁଁ ବିକି କରି ଦେବି ବୋଲି ବାହାରିଥିଲି, ହେଲେ ଏବେ ଖୋଜୁଛି କି ଏହିପରି ଏକ ଖାଲୁଆ ଜମି କେମିତି ମିଳନ୍ତା କି, ମୁଁ କିଣି ନିଅନ୍ତି । କଥାରେ ଅଛି ଯେଉଁ ବାଘ ମଣିଷ ମାଂସ ଚାଖିଛି ସେ କ'ଣ ସହଜରେ ଛାଡ଼ିବ, ମୋତେ ଦେଖି ଗାଁର ଅନ୍ୟ ଦୁଇଜଣ ମଧ୍ୟ ମାଛ ଚାଷ କରିବା ପାଇଁ ବାହାରିଲେଣି, ଭଗବାନ କରନ୍ତୁ ସେମାନଙ୍କର ବି ଉନ୍ନତି ହେଉ ।

---

ଶ୍ରୀ ପଶୁପତି ବଳବନ୍ତରାୟ,
ଗ୍ରାମ:-କୁରୁଲି, ପୋ:-ନୁଆଗାଁ,
ବ୍ଲକ୍:-ବେଲଗୁଣ୍ଠା ।

## ଗଞ୍ଜାମ ଚାଷୀ ଓଡ଼ିଶାର ଆଦର୍ଶ

ଗତ ୨୭ ତାରିଖରେ ଗଞ୍ଜାମ ଜିଲ୍ଲାର ହିଞ୍ଜିଳି ବ୍ଲକ୍ ଅନ୍ତର୍ଗତ ଶିକିରି ଏବଂ ଶେରଗଡ଼ ବ୍ଲକ୍ ଅନ୍ତର୍ଗତ କାଞ୍ଜିଆମାଠାରେ ଗ୍ରାମ୍ୟ ଉନ୍ନୟନ ସଚିବ ତଥା ଉଠା ଜଳସେଚନ ଅଧ୍ୟକ୍ଷ ଶ୍ରୀ ଅରବିନ୍ଦ କୁମାର ତ୍ରିପାଠୀ ଦୀର୍ଘଦିନ ଧରି ଅଚଳ ଥିବା ୫ଟି ଉଠା ଜଳସେଚନ ପଏଣ୍ଟକୁ ସଚଳ କରି ଉଦ୍‌ଘାଟନ କରିଥିଲେ । ଏଥିପାଇଁ ଆୟୋଜିତ ସାଧାରଣ ସଭାରେ ଶ୍ରୀ ତ୍ରିପାଠୀ କହିଥିଲେ ଯେ, ଗଞ୍ଜାମ ଚାଷୀମାନେ ଓଡ଼ିଶାର ଆଦର୍ଶ ଏବଂ ସେମାନେ ପ୍ରତ୍ୟେକ ଜଳବିନ୍ଦୁର ସଦ୍‌ବ୍ୟବହାର କରନ୍ତି । ସେମାନଙ୍କ ଉତ୍ସାହ ଯୋଗୁଁ ନିଗମ ତରଫରୁ ଗୁରୁପଡ଼ାଠାରେ ଦୀର୍ଘଦିନ ଧରି ଅଚଳ ହୋଇ ପଡ଼ିଥିବା ଉଠା ଜଳସେଚନ ପଏଣ୍ଟକୁ କାର୍ଯ୍ୟକ୍ଷମ କରାଯାଇଥିଲା । ଏହି ସଭାରେ ମୁଖ୍ୟବକ୍ତା ଭାବରେ ଯୋଗ ଦେଇ ହିଞ୍ଜିଳି ବିଧାୟକ ଶ୍ରୀ ହରିହର ସାହୁ କହିଥିଲେ ଯେ, ଗଞ୍ଜାମ ଜିଲ୍ଲା ଏକ କୃଷିପ୍ରଧାନ ଜିଲ୍ଲା । ଏହି ଜିଲ୍ଲାର ଚାଷୀମାନେ ଅତ୍ୟନ୍ତ ପରିଶ୍ରମୀ । ତେଣୁ ଏହି ଜିଲ୍ଲାକୁ ଅଗ୍ରାଧିକାର ଭିତ୍ତିରେ ଜଳସେଚନ ବ୍ୟବସ୍ଥା କରିବା ଉଚିତ । ହିଞ୍ଜିଳି ବ୍ଲକ୍ ଅଧ୍ୟକ୍ଷ ଶ୍ରୀ ସୁରେନ୍ଦ୍ରନାଥ ପ୍ରଧାନ ଶିକିରି ଗ୍ରାମପଞ୍ଚାୟତରେ ପାନୀୟଜଳ ଯୋଗାଣ ଏବଂ ଜଳନିଷ୍କାସନ ପ୍ରଣାଳୀ ଉପରେ ଗୋଟିଏ ପୋଲ ନିର୍ମାଣ ପାଇଁ ଦାବି କରିଥିଲେ ।

ସଭା ଆରମ୍ଭରେ ଉଠା ଜଳସେଚନ ଦକ୍ଷିଣାଞ୍ଚଳ ଅଧୀକ୍ଷଣ ଯନ୍ତ୍ରୀ ଶ୍ରୀ ସଚ୍ଚିଦାନନ୍ଦ ନାୟକ ଅତିଥିମାନଙ୍କୁ ସ୍ୱାଗତ କରିବା ସଙ୍ଗେ ସଙ୍ଗେ ସଚଳ କରାଯାଇଥିବା ପଏଣ୍ଟଗୁଡ଼ିକ ସମ୍ପର୍କରେ ସୂଚନା ଦେଇଥିଲେ । ଅଧ୍ୟକ୍ଷ ଶ୍ରୀ ତ୍ରିପାଠୀ ସାମ୍ବାଦିକମାନଙ୍କୁ

ପ୍ରୟୋଜନ ବୋଲି ସେ ମତ ପ୍ରକାଶ କରିଥିଲେ କାରଣ ଏଥି ନିମନ୍ତେ ପ୍ରଚୁର ସହଯୋଗ ଓ ସଂଯୋଜନା ଏକାନ୍ତ ଦରକାର ।

ଓଡ଼ିଶା ଶିଶୁ କଲ୍ୟାଣ ପରିଷଦର ନିର୍ଦ୍ଦେଶକ ତଥା ରାଜ୍ୟପାଳଙ୍କ ଶାସନ ସଚିବ ଶ୍ରୀ ଧ୍ରୁବେନ୍ଦ୍ର ନାଥ ପାଢ଼ୀ, ଆଇ: ଏ: ଏସ୍: ପ୍ରାରମ୍ଭରେ ଅତିଥିମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବା ସହିତ ରାଜ୍ୟ ପରିଷଦର କାର୍ଯ୍ୟାବଳୀ ସମ୍ପର୍କରେ ସୂଚନା ପ୍ରଦାନ କରି କହିଥିଲେ ଯେ, ରାଜ୍ୟରେ ୬ ଗୋଟି ବାଳାଶ୍ରମରେ ୬୩୬ ଜଣ ପିଲାଙ୍କୁ ରଖାଯାଇଛି, ୪ଟି ହଲିଡେ ହୋମ କ୍ୟାମ୍ପ ପରିଚାଳନା କରାଯାଇଛି, ଶାରୀରିକ ଅକ୍ଷମ ଶିଶୁମାନଙ୍କୁ ବିଭିନ୍ନ ବୈଷୟିକ ପ୍ରଶିକ୍ଷଣ ପ୍ରଦାନ କରିବା ସହିତ ୫ଟି ଅଙ୍ଗନ ବାଡ଼ି ତାଲିମ କେନ୍ଦ୍ରରୁ ୧,୩୨୯ କର୍ମୀଙ୍କୁ ତାଲିମ ଦିଆଯାଇଛି । ଢେଙ୍କାନାଳ, ମୟୂରଭଞ୍ଜ ଓ କେନ୍ଦୁଝର ଜିଲ୍ଲାରେ ତିନିଗୋଟି କର୍ମଶାଳା ଆୟୋଜନ କରାଯାଇ ଜନଚେତନା ସୃଷ୍ଟି ପାଇଁ ପ୍ରୟାସ କରାଯାଇଛି । ବାଳଭବନ ନିର୍ମାଣ କାର୍ଯ୍ୟକ୍ରମକୁ ଆଗେଇ ନେବାପାଇଁ ରାଜ୍ୟସରକାର ୭.୫ ଲକ୍ଷ ଟଙ୍କା ପ୍ରଦାନ କରିଥିବା ଶ୍ରୀ ପାଢ଼ୀ ପ୍ରକାଶ କରିଥିଲେ । ଅଭିନନ୍ଦନ ପତ୍ର ମୁଦ୍ରଣ ଓ ବିକ୍ରୟ ଦ୍ୱାରା ପ୍ରାୟ ୫୦ ହଜାର ଟଙ୍କାର ରାଶି ପରିଷଦ ସଂଗ୍ରହ କରିପାରିଛି । ଶିଶୁମାନଙ୍କର ବିଭିନ୍ନ ସମସ୍ୟା ଉପରେ ଆଧାରିତ ଆଲୋଚନା ଚକ୍ର ଓ କର୍ମଶାଳା ଆୟୋଜନ କରାଯାଇଛି । ରାଜ୍ୟସରକାର ଏହି ପରିଷଦକୁ ନୋଡ଼ାଲ ଏଜେନ୍‌ସି ରୂପେ ସ୍ୱୀକୃତି ପ୍ରଦାନ କରିଥିବା ସେ ସୂଚନା ଦେଇଥିଲେ ।

ଏହି ବୈଠକରେ ଅନ୍ୟମାନଙ୍କ ମଧ୍ୟରେ ଶ୍ରୀ ଆର: ପି: ସରାଫ୍, ଶ୍ରୀମତୀ କୁସୁମ କପୁର, ଶ୍ରୀ ବି: ଆର: ନାୟକ, ଶ୍ରୀ ରଞ୍ଜିତ୍ ଭାଞ୍ଜ, ଶ୍ରୀ ଏଫ୍: ସି: ପାତ୍ରାର, ଶ୍ରୀ ଗୋକୁଳ ଗାଙ୍ଗୁଲୀ, ଶ୍ରୀ ଏ: କେ: ଭୂୟାଁ, ଡକ୍ଟର ଆର: ପି: ସିଂହ, ପଶ୍ଚିମ ବଙ୍ଗ ପରିଷଦର ଶ୍ରୀମତୀ ଆରତୀ ଶ୍ରୀମଲ୍ ଏବଂ ଭାରତୀୟ ଶିଶୁ କଲ୍ୟାଣ ପରିଷଦର ପୂର୍ବତନ ଅଧ୍ୟକ୍ଷା ଶ୍ରୀମତୀ ଫୁଲବାଣୀ ଗୁହ ଆଲୋଚନାରେ ଅଂଶଗ୍ରହଣ କରି ବହୁ ଉପାଦେୟ ପରାମର୍ଶ ଦେଇଥିଲେ ।

ଅପରାହ୍ନରେ ଓଡ଼ିଶା ରାଜ୍ୟ ଶିଶୁ କଲ୍ୟାଣ ପରିଷଦର ଆଜୀବନ ସଭ୍ୟ ଓ ସଭ୍ୟାମାନେ ଏକ 'ମତ ବିନିମୟ' କାର୍ଯ୍ୟକ୍ରମରେ ଯୋଗ ଦେଇଥିଲେ ଏବଂ କେନ୍ଦ୍ର ପରିଷଦର କର୍ମକର୍ତ୍ତା ଓ ବିଶେଷ କରି ଅଧ୍ୟକ୍ଷା ଶ୍ରୀମତୀ ବିଦ୍ୟାବେନ ଶାହାଙ୍କ ସହ ଶିଶୁ କଲ୍ୟାଣ କାର୍ଯ୍ୟକ୍ରମକୁ ରୂପାୟିତ କଲାବେଳେ ଦେଖାଦେଉଥିବା ଅଭାବ ଓ ଅସୁବିଧାଗୁଡ଼ିକ ସମ୍ବନ୍ଧରେ ଆଲୋଚନା କରିଥିଲେ ।

## ଯୋଗାଣ ମନ୍ତ୍ରୀ ଶ୍ରୀ ବେହେରାଙ୍କ ଦ୍ୱାରା ନୟାଗଡ଼ଠାରେ 'ଅମରେନ୍ଦ୍ର ବଜାର' ଉଦ୍‌ଘାଟିତ

ଗତ ଅଗଷ୍ଟ ୨୦ ତାରିଖ ପୂର୍ବାହ୍ନରେ ରାଜ୍ୟ ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ ଶ୍ରୀ ଭାଗବତ ବେହେରା ନୟାଗଡ଼ଠାରେ "ଅମରେନ୍ଦ୍ର ବଜାର"ର ଶୁଭ ଉଦ୍‌ଘାଟନ କରିଥିଲେ । ଏହି ଉତ୍ସବ ଉପଲକ୍ଷେ ସ୍ଥାନୀୟ ଅମରେନ୍ଦ୍ର ବଜାର ସଙ୍ଘ ଆନୁକୂଲ୍ୟରେ ସେଠାରେ ଆୟୋଜିତ ଏକ ସାଧାରଣ ସଭାରେ ଶ୍ରୀ ବେହେରା ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ସଙ୍ଘର ଏଭଳି ସାଧୁ ଉଦ୍ୟମର ପ୍ରଶଂସା କରିବା ସଙ୍ଗେ ସଙ୍ଗେ ନୟାଗଡ଼କୁ କଟକ ଓ ଭୁବନେଶ୍ୱର ଭଳି ସହର ଭାବେ ଗଢ଼ି ତୋଳିବା ପାଇଁ ସଙ୍ଘର କର୍ମକର୍ତ୍ତା ଏବଂ ବିଶେଷ କରି ଜନସାଧାରଣଙ୍କ ସାହାଯ୍ୟ ସହଯୋଗ କାମନା କରିଥିଲେ । ସାଧାରଣ ଖାଉଟି, ଜନସାଧାରଣ ଏବଂ ସରକାରଙ୍କ ପ୍ରତି ବ୍ୟବସାୟ ସଙ୍ଘର କର୍ତ୍ତବ୍ୟବୋଧ ସମ୍ପର୍କରେ ମଧ୍ୟ ସେ ଆଲୋକପାତ କରିଥିଲେ ।

ସଙ୍ଘର ସଭାପତି ଶ୍ରୀ ଦଣ୍ଡପାଣି ନାୟକଙ୍କ ପୌରୋହିତ୍ୟରେ ଅନୁଷ୍ଠିତ ଏହି ସଭାରେ ସ୍ଥାନୀୟ ଏନ୍: ଏ: ସି: ଚେୟାରମ୍ୟାନ୍ ଶ୍ରୀ ଭବାନୀ ଶଙ୍କର ଦାସ ଓ ନୟାଗଡ଼ ଉପ ଜିଲ୍ଲାପାଳ ଶ୍ରୀ ଗିରିଶ ଚନ୍ଦ୍ର ମହାନ୍ତି ସମ୍ମାନିତ ଅତିଥି ଭାବେ ଯୋଗ ଦେଇଥିଲେ ।

ଅପରାହ୍ନରେ ମନ୍ତ୍ରୀ ଶ୍ରୀ ବେହେରା ପ୍ରଜାମଣ୍ଡଳ ମହିଳା ମହାବିଦ୍ୟାଳୟର ଏକ ନୂତନ କୋଠାଘର ଉଦ୍‌ଘାଟନ କରିଥିଲେ । ଏହି କୋଠାଘରଟିକୁ ଶ୍ରୀ ଚତୁର୍ଭୁଜ ସରାଫ ଏହି ମହାବିଦ୍ୟାଳୟକୁ ଦାନ କରିଛନ୍ତି । ଏହି ଉପଲକ୍ଷେ ସ୍ଥାନୀୟ ଉପ ଜିଲ୍ଲାପାଳ ଶ୍ରୀ ମହାନ୍ତିଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଉତ୍ସବରେ ମନ୍ତ୍ରୀ ଶ୍ରୀ ବେହେରା ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଶ୍ରୀ ସରାଫଙ୍କ ଏଭଳି ମହତ୍ କାର୍ଯ୍ୟର ଭୂୟସୀ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଅଧ୍ୟାପକ ଓ କର୍ମଚାରୀମାନେ ଗଠନମୂଳକ କାର୍ଯ୍ୟରେ ମନୋନିବେଶ କରି ଛାତ୍ରୀମାନଙ୍କ ବୌଦ୍ଧିକ ସ୍ତରର ବିକାଶ ଘଟାଇବାକୁ ପରାମର୍ଶ ଦେଇଥିଲେ ।

କଲେଜର ପ୍ରିନ୍‌ସିପାଲ ତାଙ୍କର ପ୍ରାରମ୍ଭିକ ଭାଷଣରେ କଲେଜର ବିଭିନ୍ନ ସମସ୍ୟା ସମ୍ପର୍କରେ ମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଅନ୍ୟମାନଙ୍କ ମଧ୍ୟରେ ଶ୍ରୀ ଚତୁର୍ଭୁଜ ସରାଫ୍ ଏନ୍: ଏ: ସି: ଚେୟାରମ୍ୟାନ୍‌ଙ୍କ ସମେତ କଲେଜ ପରିଚାଳନା କମିଟିର ସଭ୍ୟ, ଅଧ୍ୟାପକ ଏବଂ କର୍ମଚାରୀ ବୃନ୍ଦ ଏହି ଉତ୍ସବରେ ଯୋଗ ଦେଇଥିଲେ ।

## ହରିଜନ ଓ ଆଦିବାସୀଙ୍କୁ ସାମାଜିକ ନ୍ୟାୟ ପ୍ରଦାନ

ରାଜ୍ୟର ହରିଜନ ଓ ଆଦିବାସୀ ଶ୍ରେଣୀ ଲୋକମାନଙ୍କ ସାମାଜିକ ଜୀବନର ଉନ୍ନତି ସାଧନ ନିମନ୍ତେ ସରକାରଙ୍କ ତରଫରୁ ବିଭିନ୍ନ ଯୋଜନା ମାଧ୍ୟମରେ ସାହାଯ୍ୟ ଯୋଗାଇ ଦିଆଯାଉଛି । ତଦନୁଯାୟୀ ହରିଜନ ଓ ଆଦିବାସୀ ଶ୍ରେଣୀର ଲୋକଙ୍କୁ ସାମାଜିକ ନ୍ୟାୟ ପ୍ରଦାନ କାର୍ଯ୍ୟକ୍ରମରେ ଚଳିତ ଆର୍ଥିକ ବର୍ଷର ପ୍ରଥମ ଚାରିମାସରେ, ଅର୍ଥାତ୍ ଗତ ଜୁଲାଇ ମାସ ସୁଦ୍ଧା ୨୬,୮୩୮ ଜଣ ହରିଜନ ଓ ଆଦିବାସୀ ଲୋକ ଉପକୃତ ହୋଇପାରିଛନ୍ତି । ସେମାନଙ୍କ ମଧ୍ୟରେ ୮,୬୨୪ ଜଣ ହରିଜନ ଶ୍ରେଣୀର ଲୋକ ଅନ୍ତର୍ଭୁକ୍ତ । ଏହି କାର୍ଯ୍ୟକ୍ରମରେ କେବଳ ଗତ ଜୁଲାଇ ମାସରେ

# ସମ୍ବାଦ ପରିକ୍ରମା

## ଭାରତୀୟ ଶିଶୁ କଲ୍ୟାଣ ପରିଷଦର ପୂର୍ବାଞ୍ଚଳ କାଉନ୍‌ସିଲ୍ ଅଧିବେଶନ ଭୁବନେଶ୍ୱରଠାରେ ଅନୁଷ୍ଠିତ

ସମାଜରେ ଅବହେଳିତ ଓ ଦୁଃସ୍ଥ ଅବସ୍ଥାରେ ରହିଥିବା ଶିଶୁମାନଙ୍କର ସମନ୍ୱିତ ବିକାଶ କାର୍ଯ୍ୟକ୍ରମକୁ ଗ୍ରାମାଞ୍ଚଳରୁ ଆରମ୍ଭ କରି ସହର ଓ ନଗର ପର୍ଯ୍ୟନ୍ତ ବିସ୍ତାରିତ କରାଯିବାରେ ସାମାନ୍ୟତମ ଅବହେଳା କଲେ ଦେଶ ଏକ ବିରାଟ ଦୁର୍ଯୋଗର ସମ୍ମୁଖୀନ ହେବ । ତେଣୁ ଏ ଦିଗରେ ଜଣସାଧାରଣଙ୍କୁ ସର୍ବାଧିକାରୁ ଭିତ୍ତିରେ ସଚେତନ କରାଇବା ଓ ଅଧିକରୁ ଅଧିକ ଜନସହଯୋଗ ପ୍ରାପ୍ତି ପାଇଁ ଆଞ୍ଚଳିକ ପରିଷଦର ସଭ୍ୟମାନେ ନିଷ୍ଠାପର ଉଦ୍ୟମ ଅବ୍ୟାହତ ରଖିବାକୁ ଭାରତୀୟ ଶିଶୁ କଲ୍ୟାଣ ପରିଷଦର ଅଧ୍ୟକ୍ଷା ପଦ୍ମଶ୍ରୀ ବିଦ୍ୟାବେନ ଶାହା ଆହ୍ୱାନ ଦେଇଛନ୍ତି ।

ଓଡ଼ିଶା ରାଜ୍ୟ ଶିଶୁ କଲ୍ୟାଣ ପରିଷଦ ଦ୍ୱାରା ଆୟୋଜିତ ପୂର୍ବାଞ୍ଚଳ କାଉନ୍‌ସିଲ୍‌ର ପ୍ରଥମ ଅଧିବେଶନ ଅଗଷ୍ଟ ୨୨ରେ ଭୁବନେଶ୍ୱରସ୍ଥିତ ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କ୍ ସମ୍ମିଳନୀ ପ୍ରକୋଷ୍ଠରେ ଅନୁଷ୍ଠିତ ହୋଇଯାଇଛି । ଓଡ଼ିଶା, ବିହାର, ପଶ୍ଚିମ ବଙ୍ଗ ଓ ସିକିମ୍ ରାଜ୍ୟର ଶିଶୁ କଲ୍ୟାଣ ପରିଷଦ ତରଫରୁ ବହୁ ପ୍ରତିନିଧି ଏହି ବୈଠକରେ ଯୋଗ ଦେଇଥିଲେ । ଭାରତୀୟ ଶିଶୁ କଲ୍ୟାଣ ପରିଷଦର ଅଧ୍ୟକ୍ଷା ଶ୍ରୀମତୀ ବିଦ୍ୟାବେନ ଶାହା ଏହି ବୈଠକରେ ପୌରୋହିତ୍ୟ କରିଥିଲେ । ଭାରତୀୟ ଶିଶୁ କଲ୍ୟାଣ ପରିଷଦ ସେକ୍ରେଟାରୀ ଜେନେରାଲ୍ ଶ୍ରୀମତୀ ହମୀଦା ହବିବୁଲା, ଉପସଭାପତି ଶ୍ରୀ ଆର୍‌. ପି. ସରାଫ୍, ଆସିଷ୍ଟାଣ୍ଟ ସେକ୍ରେଟାରୀ ଜେନେରାଲ୍ ଶ୍ରୀମତୀ କୁସୁମ କପୁର ଓ ଶ୍ରୀ ବି. ଆର୍‌. ନାୟକ, ଆଞ୍ଚଳିକ ସଂଯୋଜକ ଶ୍ରୀ ରଞ୍ଜିତ ଭାଇ ଏବଂ କୋଷାଧ୍ୟକ୍ଷ ଶ୍ରୀ ଏସ୍. ପି. ପାତ୍ର ଏହି ଅଧିବେଶନରେ ମଧ୍ୟ ଯୋଗ ଦେଇଥିଲେ । କେନ୍ଦ୍ର ଶିଶୁ କଲ୍ୟାଣ ପରିଷଦର ବହୁ ଆଜୀବନ ସଭ୍ୟଙ୍କ ସହ ଓଡ଼ିଶା ରାଜ୍ୟ ପରିଷଦର ବହୁ ଆଜୀବନ ସଭ୍ୟ ମଧ୍ୟ ଏହି ବୈଠକରେ ଅଂଶ ଗ୍ରହଣ କରିଥିଲେ ।

ଶ୍ରୀମତୀ ଶାହା ଦେଶରେ ୮୦୦ଟି ବାଲ୍‌ୱାଡ଼ି କେନ୍ଦ୍ର, ୧,୬୦୦ କ୍ରେଚ୍, ୨୧୬ଟି ଅଙ୍ଗନବାଡ଼ି ତାଲିମ କେନ୍ଦ୍ର, ୨୬ଟି ବାଳସେବିକା ତାଲିମ କେନ୍ଦ୍ର ଓ ପ୍ରାୟ ୬୦୦ ପ୍ରାଥମିକ ଶିକ୍ଷା କେନ୍ଦ୍ର ପରିଚାଳିତ ହେଉଥିଲେ ମଧ୍ୟ ଶିଶୁମାନଙ୍କ ସଂଖ୍ୟା ଓ ସାମ୍ପ୍ରତିକ ସମସ୍ୟାବଳୀ ଦୃଷ୍ଟିରୁ ଏହି କାର୍ଯ୍ୟକ୍ରମ ଯଥେଷ୍ଟ ନୁହେଁ ବୋଲି ପ୍ରକାଶ କରି ଆହୁରି ଅନେକ ସମ୍ଭାବ୍ୟ ପରିକଳ୍ପନା ହାତକୁ ନେଇ ସମାଜର ନିମ୍ନସ୍ତରରୁ ତୁରନ୍ତ କାର୍ଯ୍ୟାରମ୍ଭ କରିବାକୁ ଏକ ମର୍ମସ୍ପର୍ଶୀ ନିବେଦନ କରିଥିଲେ । ବିଭିନ୍ନ ବିପଦସଙ୍କୁଳ କାରଖାନାରେ ନିତାନ୍ତ ଅସ୍ୱାସ୍ଥ୍ୟକର ପରିବେଶ ମଧ୍ୟରେ ଦେଶର ଲକ୍ଷ ଲକ୍ଷ ଶିଶୁ ଓ କିଶୋର ଶ୍ରମିକ ଏବେବି ନିର୍ଯ୍ୟାତନା ଭୋଗ କରୁଥିବା ବାସ୍ତବିକ ବେଦନାଦାୟକ ବୋଲି ସେ ମତ ପ୍ରକାଶ କରିଥିଲେ । ଅଶିକ୍ଷା, ଆର୍ଥିକ ଅଭାବ, ଅନାଟନ ସହ ଜନଚେତନାର ଅଭାବ ଶିଶୁ କଲ୍ୟାଣ କାର୍ଯ୍ୟକ୍ରମକୁ ସୁଦୂର ପ୍ରସାରୀ କରିବାରେ ପ୍ରତିବନ୍ଧକ ସୃଷ୍ଟି କରୁଥିବାରୁ ଏହାର ଦୂରୀକରଣ ନିମନ୍ତେ ନିଷ୍ଠାପର ଉଦ୍ୟମ କରିବାକୁ ଆଜୀବନ ସଭ୍ୟ ଓ ସଭ୍ୟାମାନଙ୍କୁ ସେ ପରାମର୍ଶ ଦେଇଥିଲେ । ଏହି ଜନସହଯୋଗ ପ୍ରାପ୍ତ କରିବା ଉଦ୍ଦେଶ୍ୟରେ କେନ୍ଦ୍ର ପରିଷଦ ଦେଶର ସମସ୍ତ ରାଜ୍ୟକୁ ୫ଟି ଆଞ୍ଚଳିକ ପରିଷଦରେ ବିଭକ୍ତ କରିଛନ୍ତି । ମାନବସମ୍ବଳ ବିକାଶ ଦେଶର ପ୍ରଗତି ପାଇଁ ଅପରିହାର୍ଯ୍ୟ ହୋଇଥିବାରୁ ଶିଶୁ କଲ୍ୟାଣ ଏହି କାର୍ଯ୍ୟକ୍ରମର ପ୍ରଥମ ସୋପାନ ରୂପେ ପରିଗଣିତ ହେବା ବାଞ୍ଛନୀୟ ।

ଗ୍ରାମୀଣ କ୍ଷେତ୍ରରେ ବିଶେଷ କରି ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଶିଶୁ କଲ୍ୟାଣ କାର୍ଯ୍ୟକ୍ରମକୁ ଆଗେଇ ନେବା ପାଇଁ ଯଥେଷ୍ଟ ସଂଖ୍ୟକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଓ ବ୍ୟକ୍ତିବିଶେଷ ଏହି କାର୍ଯ୍ୟରେ ସଂଶ୍ଳିଷ୍ଟ ହେବା ନିତାନ୍ତ ଦରକାର ବୋଲି ମତପ୍ରକାଶ କରି ରାଜ୍ୟପରିଷଦମାନେ ଏଥିନିମନ୍ତେ ସମାଜର ନିମ୍ନ ସ୍ତରରେ ତୁରନ୍ତ ଭିତ୍ତିଭୂମି ସ୍ଥାପନ କରନ୍ତୁ ବୋଲି ଶ୍ରୀମତୀ ଶାହା ପରାମର୍ଶ ଦେଇଥିଲେ ।

ସେକ୍ରେଟାରୀ ଜେନେରାଲ ଶ୍ରୀମତୀ ହମିଦା ହବିବୁଲା ରାଜ୍ୟପରିଷଦର କାର୍ଯ୍ୟକ୍ରମରେ ସନ୍ତୋଷ ପ୍ରକାଶ କରି କହିଥିଲେ ଯେ, ଦେଶର ପିଲାମାନେ ଭଲ ପରିବେଶରେ ବଢ଼ି ସଚେତନ ନାଗରିକ ହୋଇପାରିଲେ ସେମାନେ ଦେଶକୁ ବାସ୍ତବିକ ସୁରକ୍ଷା, ଆର୍ଥିକ ସ୍ୱଚ୍ଛଳତା ଏବଂ ସମୃଦ୍ଧ ସମାଜ ପ୍ରଦାନ କରିପାରିବେ । ଏହି କାର୍ଯ୍ୟକୁ ଏକ "ରାଷ୍ଟ୍ରୀୟ ସେବା" ଭାବେ ଅଭିହିତ କରି ପ୍ରତ୍ୟେକ ଜନସାଧାରଣ ଏଥିରେ ଅଂଶିଦାର ହେବା ନିତାନ୍ତ

ପଶୁ ଚିକିତ୍ସା ନିର୍ଦ୍ଦେଶକ କୁକୁଡ଼ା ଅଣ୍ଡା ଓ ବ୍ରଏଲର୍ କୁକୁଡ଼ା ଛିଆଁ ଉତ୍ପାଦନ ଦିଗରେ ଧ୍ୟାନ ଦେବା ପାଇଁ ଅପୋଲଫେଡ୍‌ର ପରିଚାଳନା ନିର୍ଦ୍ଦେଶକଙ୍କୁ ପରାମର୍ଶ ଦେଇଥିଲେ । ଉନ୍ନତ କୁକୁଡ଼ା ଚାଷ ନିମନ୍ତେ ଅପୋଲଫେଡ୍ ଦ୍ୱାରା କୁକୁଡ଼ା ଚାଷୀମାନଙ୍କୁ ତାଲିମ ଦିଆଯାଉଛି ।

ରାଜ୍ୟରେ ଅଧିକ ଦୁଗ୍ଧ ଉତ୍ପାଦନ ବିଷୟରେ ବିଶଦ ଭାବେ ଆଲୋଚନା କରାଯାଇ ଦୁଗ୍ଧ ଉତ୍ପାଦନ ବୃଦ୍ଧି ଉପରେ ଗୁରୁତ୍ୱ ଦେବା ସଙ୍ଗେ ସଙ୍ଗେ ଉତ୍ପାଦନକାରୀମାନେ ଯେପରି ଅଧିକ ଲାଭବାନ ହୋଇପାରିବେ, ସେ ଦିଗରେ ଦୃଷ୍ଟି ଦେବା ପାଇଁ ସଭ୍ୟମାନେ ମତ ପ୍ରକାଶ କରିଥିଲେ ।

ଗୋ-ଖାଦ୍ୟ ଉତ୍ପାଦନ, ରୋଗ ନିରାକରଣ, ବନ୍ଧ୍ୟା ନିରାକରଣ, ଉନ୍ନତ ମାନର ଗୋ-ଶୁକ୍ର ଉତ୍ପାଦନ, ଗ୍ରାମାଞ୍ଚଳରେ ଦିଆଯାଇଥିବା ଉନ୍ନତ ଷଣ୍ଢମାନଙ୍କର ରକ୍ଷଣାବେକ୍ଷଣ ବାବଦ ଅର୍ଥ ବୃଦ୍ଧି, ପଶୁ ଚିକିତ୍ସା କେନ୍ଦ୍ରମାନଙ୍କୁ ଅଧିକ ଅତ୍ୟାବଶ୍ୟକ ଔଷଧ ଯୋଗାଣ ଏବଂ କୁକୁଡ଼ା ପାଳନକୁ ଏକ ଶିଳ୍ପରେ ପରିଣତ କରିବା ଦିଗରେ ପଦକ୍ଷେପ ନେବା ପାଇଁ ସଭ୍ୟମାନେ ମତବ୍ୟକ୍ତ କରିଥିଲେ ।

ଏହି ବୈଠକରେ ବିଧାୟକ ସର୍ବଶ୍ରୀ ବସନ୍ତ କୁମାର ବିଶ୍ୱାଳ, ପ୍ରସନ୍ନ କୁମାର ପାଳ ଓ ଉମାବଲ୍ଲଭ ରଥଙ୍କ ସମେତ ବିଭାଗୀୟ ନିର୍ଦ୍ଦେଶକ, ଓମ୍‌ଫେଡ୍‌ର ପରିଚାଳନା ନିର୍ଦ୍ଦେଶକ, ପଶୁ ଚିକିତ୍ସା ନିର୍ଦ୍ଦେଶକ, ମତ୍ସ୍ୟ ନିର୍ଦ୍ଦେଶକ, ଅପୋଲଫେଡ୍‌ର ଉଚ୍ଚ କର୍ମକର୍ତ୍ତା ଏବଂ ଅନ୍ୟାନ୍ୟ ସମ୍ପୃକ୍ତ ବିଭାଗୀୟ କର୍ମଚାରୀମାନେ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ବାସହୀନଙ୍କୁ ଘରଡ଼ିହ ଯୋଗାଣ

ରାଜ୍ୟର ବାସହୀନ ହରିଜନ, ଆଦିବାସୀ, ଗୋତିମୁକ୍ତ ଶ୍ରମିକ ଓ ଆର୍ଥିକ ଦୁର୍ବଳ ଶ୍ରେଣୀ ଲୋକମାନଙ୍କୁ ସରକାରଙ୍କ ପକ୍ଷରୁ ମାଗଣାରେ ଘରଡ଼ିହ ଯୋଗାଇ ଦିଆଯାଇଛି ଏବଂ ଏହା ସଙ୍ଗେ ସଙ୍ଗେ ବାସଗୃହ ନିର୍ମାଣ ନିମନ୍ତେ ଆର୍ଥିକ ସାହାଯ୍ୟ ଯୋଗାଇ ଦିଆଯାଉଛି । ଏହି ଅନୁଯାୟୀ ଚଳିତ ଆର୍ଥିକ ବର୍ଷର ଗତ ଚାରିମାସ ମଧ୍ୟରେ ଜୁଲାଇ ସୁଦ୍ଧା ୩,୩୧୯ଟି ଘରଡ଼ିହ ଯୋଗାଇ ଦିଆଯାଇଛି ଏବଂ ୫,୩୨୫ଟି ଗୃହ ପାଇଁ ନିର୍ମାଣ ସାହାଯ୍ୟ ଦିଆଯାଇଛି । କେବଳ ଗତ ଜୁଲାଇମାସରେ ଏହି କାର୍ଯ୍ୟକ୍ରମରେ ୧,୬୬୭ଟି ଘରଡ଼ିହ ଯୋଗାଇ ଦେବା ସହିତ ୨,୪୮୫ଟି ଗୃହର ନିର୍ମାଣ ପାଇଁ ନିର୍ମାଣ ସାହାଯ୍ୟ ଯୋଗାଇ ଦିଆଯାଇଛି ବୋଲି ଯୋଜନା ଓ ସମନ୍ୱୟ ବିଭାଗର ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ବିବରଣୀରୁ ଜଣାଯାଇଛି ।

## ରାଜ୍ୟସ୍ତରୀୟ ସଦ୍‌ଭାବନା ଦିବସ
## ସଦ୍‌ଭାବନା ପ୍ରତ୍ୟେକ ଆଚରଣରେ ପ୍ରତିଫଳିତ ହେବାଆବଶ୍ୟକ

ବର୍ତ୍ତମାନ ସମାଜରେ ସଦ୍‌ଭାବ ତୁଳନାରେ ଅସଦ୍‌ଭାବର ପରିମାଣ ବୃଦ୍ଧି ଘଟିଥିବା ହେତୁ ଆଜି ଏହି ସଦ୍‌ଭାବନା ଦିବସ ପାଳନର ଆବଶ୍ୟକତା ପଡ଼ିଛି ବୋଲି ରାଜ୍ୟ ବିଧାନ ସଭା ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାସ ପ୍ରକାଶ କରିବା ସହ ସଦ୍‌ଭାବ ଯେପରି ପ୍ରତ୍ୟେକଙ୍କ ଆଚରଣରେ ପ୍ରତିଫଳିତ ହୁଏ, ସେଥିପ୍ରତି ଚିନ୍ତା କରାଯିବା ଉପରେ ଗୁରୁତ୍ୱ ଆରୋପ କରିଥିଲେ ।

ସମ୍ପ୍ରତି ସୂଚନା ଓ ଲୋକ ସମ୍ପର୍କ ବିଭାଗ ଆନୁକୂଲ୍ୟରେ ସ୍ଥାନୀୟ ସୂଚନା ଭବନଠାରେ ଆୟୋଜିତ ରାଜ୍ୟସ୍ତରୀୟ ସଦ୍‌ଭାବନା ଦିବସ ପାଳନ ଉତ୍ସବରେ ଅଧ୍ୟକ୍ଷତା କରି ଶ୍ରୀ ଦାସ ଉପରୋକ୍ତ ମତବ୍ୟକ୍ତ କରିବା ସହ ଉପସ୍ଥିତ ଜନତାଙ୍କୁ ସଦ୍‌ଭାବନା ଦିବସର ଶପଥ ପାଠ କରାଇଥିଲେ । ଶପଥ ପାଠର ମହତ୍ତ୍ୱ ଉପଲବ୍ଧି କରି ପରମୁହୂର୍ତ୍ତରେ ଏହାକୁ ଭୁଲି ନଯିବା ଲାଗି ସେ ଉପଦେଶ ଦେଇ, ବ୍ୟକ୍ତି ମଧ୍ୟରେ ରହିଥିବା ବିଭେଦକୁ ଭୁଲି, ସ୍ୱାଧୀନତା ସଂଗ୍ରାମ ସମୟରେ ଯେଉଁ ଭଳି ଦେଶପ୍ରେମ ଓ ଏକତା ସୃଷ୍ଟି ହୋଇଥିଲା, ବର୍ତ୍ତମାନ ମଧ୍ୟ ସେଭଳି ଜାଗରଣର ଆବଶ୍ୟକତା ରହିଛି ବୋଲି ସେ ମତବ୍ୟକ୍ତ କରିଥିଲେ ।

ଏହି ଉତ୍ସବରେ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା ମୁଖ୍ୟ ଅତିଥି ରୂପେ ଯୋଗ ଦେଇ କହିଥିଲେ ଯେ ସଦ୍‌ଭାବନା, ହିଂସା ଓ ଶାନ୍ତିମନ୍ତ୍ରର ବାର୍ତ୍ତା ବହନ କରି ଆମେ ଯେଉଁ ସ୍ୱାଧୀନତା ହାସଲ କରିଛେ, ତାକୁ ସୁଦୃଢ଼ କରିବା ପାଇଁ ଆଜିର ସଦ୍‌ଭାବନା ଶପଥ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଯୁବ ସମାଜ ସମସ୍ତ ଅସଦ୍‌ଭାବନାର ଊର୍ଦ୍ଧ୍ୱରେ ରହି ଏକ ସୁଶୃଙ୍ଖଳିତ ସମାଜ ଗଠନ ଦିଗରେ ଆଗେଇ ଆସିବା ନିମନ୍ତେ ସେ ଆହ୍ୱାନ ଦେଇଥିଲେ ।

ଅନ୍ୟମାନଙ୍କ ମଧ୍ୟରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଗଙ୍ଗାଧର ପାଇକରାୟ, ପଣ୍ଡିତ ରଘୁନାଥ ମିଶ୍ର ଏବଂ ଶ୍ରୀ ମାୟାଧର ଦାଶ ପ୍ରମୁଖ ଭାଷଣ ଦେଇ ସ୍ୱାଧୀନତା ଆନ୍ଦୋଳନ ସମୟରେ 'ସଦ୍‌ଭାବନା', 'ଅହିଂସା' ଓ 'ଏକତା' କିଭଳି ଏକ ବଳିଷ୍ଠ ଅସ୍ତ୍ର ରୂପେ କାର୍ଯ୍ୟ କରିଥିଲା, ବର୍ଣ୍ଣନା କରି ସେଥିପ୍ରତି ଆବଶ୍ୟକତା ବର୍ତ୍ତମାନ ମଧ୍ୟ ରହିଛି ବୋଲି ମତବ୍ୟକ୍ତ କରିଥିଲେ ।

ପ୍ରାରମ୍ଭରେ କୋରାନ୍, ବାଇବେଲ୍ ଓ ଗୀତା ପାଠ ପୂର୍ବକ ଉତ୍ସବର ଶୁଭାରମ୍ଭ କରାଯାଇଥିଲା ଏବଂ ଶେଷରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ନିର୍ଦ୍ଦେଶକ ଶ୍ରୀ କାଳୀ କୁମାର ଦାସ ସମସ୍ତଙ୍କୁ ଧନ୍ୟବାଦ ଅର୍ପଣ କରିଥିଲେ ।

## ଜବାହର ରୋଜଗାର ଯୋଜନାରେ
## ୧୧୬୬୮ ଲକ୍ଷ ଶ୍ରମ ଦିବସ ସୃଷ୍ଟି

'ରାଜ୍ୟରେ ଗତ ଜୁଲାଇ ମାସ ଶେଷ ସୁଦ୍ଧା ଜବାହର ରୋଜଗାର ଯୋଜନାରେ ୪,୬୦୫.୯୯ ଲକ୍ଷ ଟଙ୍କା ବିନିଯୋଗ କରାଯାଇ ୧୧୬.୬୮ ଲକ୍ଷ ଶ୍ରମ ଦିବସ ସୃଷ୍ଟି କରାଯାଇ ପାରିଛି । ଏହି ଅର୍ଥ ମଧ୍ୟରେ ଅଣ-ମଜୁରୀ ବାବଦରେ ବ୍ୟୟ କରାଯାଇଥିବା ୧,୬୯୬.୯୮ ଲକ୍ଷ ଟଙ୍କା ଏବଂ ଖାଦ୍ୟଶସ୍ୟର ମୂଲ୍ୟ ସମେତ ମଜୁରୀ ବାବାଦରେ ବ୍ୟୟ ହୋଇଥିବା ୨,୯୦୮.୨୨ ଲକ୍ଷ ଟଙ୍କା ମଧ୍ୟ ଅନ୍ତର୍ଭୁକ୍ତ । ଖାଦ୍ୟଶସ୍ୟ ବାବଦକୁ ୧୨୬.୮୯ ଲକ୍ଷ ଟଙ୍କା ମୂଲ୍ୟର

୩,୬୩୭ ଜଣ ହରିଜନ ଓ ୧୧,୨୦୨ ଜଣ ଆଦିବାସୀ ଶ୍ରେଣୀର ଲୋକ ଉପକୃତ ହୋଇପାରିଛନ୍ତି ।

୭୬,୮୩୮ ଜଣ ହିତାଧିକାରୀଙ୍କ ମଧ୍ୟରୁ ଆଇ: ଆର୍: ଡି: ପିରେ ୪,୯୩୮ ଜଣ ହରିଜନ ଓ ୨,୯୨୮ ଜଣ ଆଦିବାସୀ ଏବଂ ଅନ୍ୟାନ୍ୟ କାର୍ଯ୍ୟକ୍ରମରେ ୪,୪୭୬ ଜଣ ହରିଜନ ଓ ୧୫,୨୧୬ ଜଣ ଆଦିବାସୀ ଲୋକ ଉପକୃତ ହୋଇଛନ୍ତି ବୋଲି ଯୋଜନା ଓ ସମନ୍ୱୟ ବିଭାଗର ବିଂଶସୂତ୍ରୀ କାର୍ଯ୍ୟକ୍ରମ ମାସିକ ଅଗ୍ରଗତି ବିବରଣୀରୁ ଜଣାଯାଇଛି ।

## ଆଉ ୪୬ଟି ୟୁ:ପି: ସ୍କୁଲକୁ ୟୁ:ଜି:ଏମ୍:ଇ: ସ୍କୁଲରେ ପରିଣତ କରାଗଲା

ଚଳିତ ଆର୍ଥିକ ବର୍ଷ ମଧ୍ୟରେ ୧୫୦ଟି ୟୁ: ପି: ସ୍କୁଲକୁ ୟୁ: ଜି: ସ୍କୁଲରେ ପରିଣତ କରିବା ନିମନ୍ତେ ସରକାରୀ ନିଷ୍ପତ୍ତି ନିଆଯାଇ ପ୍ରଥମ ପର୍ଯ୍ୟାୟରେ ୪୦ଟି ୟୁ: ପି: ସ୍କୁଲକୁ ୟୁ: ଜି: ଏମ୍: ଇ: ସ୍କୁଲରେ ପରିଣତ କରାଯାଇଥିଲା । ବର୍ତ୍ତମାନ ଆଉ ୪୬ଟି ୟୁ: ପି: ସ୍କୁଲକୁ ୟୁ: ଜି: ଏମ୍: ଇ: ସ୍କୁଲରେ ପରିଣତ କରାଯାଇଛି । ଫଳରେ ଏହାର ସଂଖ୍ୟା ୮୬ରେ ପହଞ୍ଚିଛି । ପରବର୍ତ୍ତୀ ପର୍ଯ୍ୟାୟରେ ଆଉ ୬୪ଟି ୟୁ: ପି: ସ୍କୁଲକୁ ୟୁ: ଜି: ଏମ୍: ଇ: ସ୍କୁଲରେ ପରିଣତ କରାଯାଇ ଧାର୍ଯ୍ୟ ଲକ୍ଷ୍ୟ ୧୫୦ ପୂରଣ କରାଯିବାର କାର୍ଯ୍ୟକ୍ରମ ରହିଛି ।

## ୧୪୨ଟି ନୂତନ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠା

ଚଳିତ ଆର୍ଥିକ ବର୍ଷ ମଧ୍ୟରେ ସ୍କୁଲ ଓ ଗଣଶିକ୍ଷା ବିଭାଗ ପକ୍ଷରୁ ରାଜ୍ୟରେ ୪୦୦ଟି ନୂତନ ନିମ୍ନ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠା ନିମନ୍ତେ ନିଷ୍ପତ୍ତି ନିଆଯାଇଛି । ତନ୍ମଧ୍ୟରୁ ବର୍ତ୍ତମାନ ସୁଦ୍ଧା ୧୪୨ଟି ବିଦ୍ୟାଳୟ ଖୋଲାଯାଇ ସାରିଲାଣି । ସେଥିମଧ୍ୟରୁ କେନ୍ଦ୍ରାପଡ଼ା ଓ ଭଦ୍ରକ ଜିଲ୍ଲାରେ ୬ଟି କରି ଏବଂ ଢେଙ୍କାନାଳ, ନୂଆପଡ଼ା ଓ ଜଗତସିଂହପୁର ଜିଲ୍ଲାରେ ୮ଟି କରି ଖୋଲାଯାଇଥିବା ବେଳେ ଯାଜପୁର ଜିଲ୍ଲାରେ ୧୪ଟି, କଟକ ଜିଲ୍ଲାରେ ନଅଟି, ପୁରୀ, ଖୋର୍ଦ୍ଧା ଓ ନୟାଗଡ଼ ଜିଲ୍ଲାରେ ମୋଟ ୨୩ଟି, କୋରାପୁଟ ଜିଲ୍ଲାରେ ୨୦ଟି, କେନ୍ଦୁଝର ଜିଲ୍ଲାରେ ୧୩ଟି ଏବଂ ସୁନ୍ଦରଗଡ଼ ଜିଲ୍ଲାର ୨୫ଟି ବିଦ୍ୟାଳୟ ଖୋଲାଯାଇଛି ।

ପରବର୍ତ୍ତୀ ପର୍ଯ୍ୟାୟରେ ରାଜ୍ୟରେ ଏଭଳି ଆଉ ୨୫୮ଟି ବିଦ୍ୟାଳୟ ଖୋଲିବାର କାର୍ଯ୍ୟକ୍ରମ ରହିଛି ।

## ୪୧ ତମ ପେନ୍‌ସନ୍ ଅଦାଲତ ବୈଠକ

ସମ୍ପ୍ରତି କେନ୍ଦୁଝର ଜିଲ୍ଲା ଡି:ଆର୍:ଡି:ଏ: ସମ୍ମିଳନୀ ପ୍ରକୋଷ୍ଠରେ ଅନୁଷ୍ଠିତ ୪୧ ତମ ପେନ୍‌ସନ୍ ଅଦାଲତ ବୈଠକରେ ଅଧ୍ୟକ୍ଷତା କରି ରାଜ୍ୟ ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ପ୍ରଶାସନ ମନ୍ତ୍ରୀ ଶ୍ରୀ ପ୍ରସନ୍ନ କୁମାର ପାଟଶାଣୀ, ଏଭଳି ପେନ୍‌ସନ୍ ଅଦାଲତ ବୈଠକର ଉପାଦେୟତା ସମ୍ପର୍କରେ ଆଲୋକପାତ କରିଥିଲେ ଏବଂ ସମସ୍ତ ବିଭାଗର ସମ୍ପୃକ୍ତ କର୍ମକର୍ତ୍ତାଙ୍କୁ ଦୀର୍ଘଦିନର ପଡ଼ି ରହିଥିବା ପେନ୍‌ସନ୍ ମାମଲାଗୁଡ଼ିକର ତୁରନ୍ତ ଫଇସଲା ପାଇଁ ଯତ୍ନଶୀଳ ହେବାକୁ ପରାମର୍ଶ ଦେଇଥିଲେ ।

ଏହି ବୈଠକରେ ଅବସରପ୍ରାପ୍ତ ଶିକ୍ଷକଙ୍କ ସମେତ ବିଭିନ୍ନ ବିଭାଗର ଅବସରପ୍ରାପ୍ତ କର୍ମଚାରୀମାନଙ୍କ ପେନ୍‌ସନ୍ ମାମଲା ସମ୍ପର୍କରେ ସମୀକ୍ଷା କରାଯାଇଥିଲା । ଏଥିରେ ୬୬ଟି ପେନ୍‌ସନ୍ ମାମଲାର ସମୀକ୍ଷା ପରେ ଘଟଣା ସ୍ଥଳରେ ୫୬ଟି ମାମଲାର ଫଇସଲା କରାଯାଇଥିଲା । ସେଥିମଧ୍ୟରେ ଅବସରପ୍ରାପ୍ତ ଶିକ୍ଷକମାନଙ୍କର ୨୭ଟି ପେନ୍‌ସନ୍ ମାମଲା ମଧ୍ୟରୁ ଫଇସଲା ହୋଇଥିବା ୨୪ଟି ମାମଲା ଏବଂ ଅନ୍ୟାନ୍ୟ ବିଭାଗର ଅବସରପ୍ରାପ୍ତ କର୍ମଚାରୀଙ୍କ ୩୯ଟି ପେନ୍‌ସନ୍ ମାମଲା ମଧ୍ୟରୁ ଫଇସଲା ହୋଇଥିବା ୩୨ଟି ମାମଲା ଅନ୍ତର୍ଭୁକ୍ତ ।

ଏହି ବୈଠକରେ ଅନ୍ୟମାନଙ୍କ ମଧ୍ୟରେ ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ପ୍ରଶାସନ ବିଭାଗର ପ୍ରମୁଖ ସଚିବ ଶ୍ରୀ ପ୍ରତାପ ମୁଖୋପାଧ୍ୟାୟ, ଓଡ଼ିଶାର ଡେପୁଟି ଏକାଉଣ୍ଟାଣ୍ଟ ଜେନେରାଲ ଶ୍ରୀ ଏସ୍: ଏନ୍: ଦାସ, ଅର୍ଥ ବିଭାଗର ଯୁଗ୍ମ ଶାସନ ସଚିବ, କଂଟ୍ରୋଲର୍ ଅଫ୍ ଏକାଉଣ୍ଟସ୍, ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ପ୍ରଶାସନ ବିଭାଗର ନିର୍ଦ୍ଦେଶକ, ସ୍କୁଲ ଓ ଗଣଶିକ୍ଷା ବିଭାଗର ଅନୁଶାସନ ସଚିବ, ପ୍ରାଥମିକ ଶିକ୍ଷା ସହକାରୀ ନିର୍ଦ୍ଦେଶକ ଏବଂ କେନ୍ଦୁଝର ଜିଲ୍ଲାପାଳ ପ୍ରମୁଖ ଯୋଗ ଦେଇଥିଲେ ।

## ମତ୍ସ୍ୟ ଓ ପଶୁ ସମ୍ପଦ ବିକାଶ ବିଭାଗ ଅନୁପଚାରିକ ଉପଦେଷ୍ଟା କମିଟି ବୈଠକ

ସମ୍ପ୍ରତି ସଚିବାଳୟଠାରେ ରାଜ୍ୟ ମତ୍ସ୍ୟ ଓ ପଶୁ ସମ୍ପଦ ବିଭାଗ ବିକାଶ ବିଭାଗ ଅନୁପଚାରିକ ପାରାମର୍ଶଦାତା କମିଟି ବୈଠକ ବିଭାଗୀୟ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୂର୍ଯ୍ୟ ନାରାୟଣ ପାତ୍ରଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା ।

ଏହି ବୈଠକରେ ଆଲୋଚିତ ହୋଇଥିବା ପ୍ରସ୍ତାବଗୁଡ଼ିକ ଉପରେ ନିଆଯାଇଥିବା କାର୍ଯ୍ୟାନୁଷ୍ଠାନ ସମ୍ପର୍କରେ ଏହି ବୈଠକରେ ଆଲୋଚନା କରାଯାଇଥିଲା । ପ୍ରତ୍ୟେକ ମତ୍ସ୍ୟ ସମ୍ପ୍ରସାରଣ ଅଧିକାରୀ ମାଛଚାଷ ନିମନ୍ତେ ଦୁଇଟି ଲେଖାଏଁ ପୋଖରୀ ଚିହ୍ନଟ କରି ଉନ୍ନତ ମାଛଚାଷ କରିବା ପାଇଁ ଥିବା ପ୍ରସ୍ତାବ ଉପରେ ବୈଠକରେ ଆଲୋଚନା ହୋଇଥିଲା । ଗତ ଜୁନ୍ ଶେଷ ସୁଦ୍ଧା ମୋଟ୍ ୪୮୦ଟି ପୋଖରୀ ହାତକୁ ନିଆଯାଇଥିବା ବିଷୟ ଜଣାପଡ଼ିଥିଲା । ଏହି କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ ସଭ୍ୟମାନେ ମତବ୍ୟକ୍ତ କରିଥିଲେ । ଅଧିକ ଜନ ସଚେତନତା ସୃଷ୍ଟି ହେଲେ, କୃତ୍ରିମ ପ୍ରଜନନ କାର୍ଯ୍ୟକ୍ରମ ଆଶାନୁରୂପ ଭାବେ ହୋଇପାରିବ ଏବଂ ଏଥିନିମନ୍ତେ ପ୍ରତ୍ୟେକ ବ୍ଲକ୍ ଅଞ୍ଚଳରେ 'ଗୋ–ମଣ୍ଡ' ଗଠନ କରାଯାଇ ପ୍ରଜନନ କାର୍ଯ୍ୟ କରାଯାଇ ପାରିବା ବିଷୟ ମନ୍ତ୍ରୀ ଶ୍ରୀ ପାତ୍ର ପ୍ରକାଶ କରିଥିଲେ । ବିଭିନ୍ନ ଗୋ–ପ୍ରଜନନ କେନ୍ଦ୍ରମାନଙ୍କରେ ତାଲିମପ୍ରାପ୍ତ ପଶୁଧନ ନିରୀକ୍ଷକମାନଙ୍କୁ ଅବସ୍ଥାପିତ କରାଯାଇଛି । ନିୟମିତ ଭାବରେ ପଶୁ ଚିକିତ୍ସକ ଓ ପଶୁଧନ ନିରୀକ୍ଷକମାନଙ୍କୁ ଖପୁରିଆ ଓ ଭବାନୀପାଟଣା କେନ୍ଦ୍ରଠାରେ ଶୁକ୍ର ଶୀତଳୀକରଣ ସମ୍ପର୍କରେ ତାଲିମ ଦିଆଯାଉଛି । ବିଭିନ୍ନ ଗୋ–ପ୍ରଜନନ କେନ୍ଦ୍ରମାନଙ୍କରେ ବନ୍ଧ୍ୟା ନିରାକରଣ, ପଶୁରୋଗ ଚିକିତ୍ସା ସମ୍ପର୍କରେ ଶିବିରମାନ ଅନୁଷ୍ଠିତ ହେଉଛି ବୋଲି ମନ୍ତ୍ରୀ ସୂଚନା ଦେଇଥିଲେ ।



# କଟକ ସରକାରୀ ମୁଦ୍ରଣାଳୟରେ ବିଶ୍ୱକର୍ମା ପୂଜାର ରୌପ୍ୟ ଜୟନ୍ତୀ ଉତ୍ସବ

ଶୁକଦେବ ମଲ୍ଲିକ

ହିନ୍ଦୁ ସଂସ୍କୃତି ଅନୁଯାୟୀ ଅତି ଆନନ୍ଦ ଉଲ୍ଲାସ ମଧ୍ୟରେ ଛୋଟ ବଡ଼ଠାରୁ ଆରମ୍ଭକରି ପ୍ରତ୍ୟେକ ଶିଳ୍ପାନୁଷ୍ଠାନମାନଙ୍କରେ କନ୍ୟା ସଂକ୍ରାନ୍ତି ଦିନ କର୍ମଚାରୀମାନେ ବିଶ୍ୱର ନିର୍ମାଣକର୍ତ୍ତା ଶ୍ରୀଶ୍ରୀଠାକୁର ବିଶ୍ୱକର୍ମାଙ୍କ ପୂଜା ଆରାଧନା ମହା ସମାରୋହରେ ପାଳନ କରିଥାନ୍ତି । ସେଦିନ କର୍ମଚାରୀମାନେ ଭୋଜିଭାତ କରି ଆନନ୍ଦରେ ଖାଇବା ପିଇବା ସଙ୍ଗେ ସଙ୍ଗେ ବିଭିନ୍ନ ପ୍ରକାର ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରି ଅନୁଷ୍ଠାନକୁ ମୁଖରିତ କରିଥାନ୍ତି । ସରକାରୀ ମୁଦ୍ରଣାଳୟରେ ପ୍ରତି ବର୍ଷ ଭଳି ଏ ବର୍ଷ ମଧ୍ୟ ଶ୍ରୀଶ୍ରୀଠାକୁର ବିଶ୍ୱକର୍ମା ପୂଜାର ୨୫ ବର୍ଷ ପୂର୍ତ୍ତି ଉପଲକ୍ଷେ ରଜତ ଜୟନ୍ତୀ ଉତ୍ସବ ଶାନ୍ତିପୂର୍ଣ୍ଣ ପରିବେଶ ତଥା ମହା ସମାରୋହରେ ପାଳିତ ହୋଇ ଯାଇଛି । ଉକ୍ତ ଉତ୍ସବରେ ମୁଦ୍ରଣାଳୟର ବିଦାୟୀ ଅବସରପ୍ରାପ୍ତ ନିର୍ଦ୍ଦେଶକମାନଙ୍କୁ ଆମନ୍ତ୍ରଣ କରାଯାଇ ସେମାନଙ୍କୁ ପୂଜା କମିଟି ତରଫରୁ ସ୍ୱାଗତ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ଏହି ଉତ୍ସବରେ ମୁଦ୍ରଣାଳୟର ନିର୍ଦ୍ଦେଶକ ଶ୍ରୀଯୁକ୍ତ ଡି: ପି: ଏସ୍ ଚୌହାନ୍ ସଭାପତିତ୍ୱ କରିଥିଲେ । ଅବସରପ୍ରାପ୍ତ ବିଦାୟୀ ନିର୍ଦ୍ଦେଶକ ଶ୍ରୀଯୁକ୍ତ ଏସ୍: ଆର୍: ପଟ୍ଟନାୟକ ମୁଖ୍ୟ ଅତିଥି, ଶ୍ରୀଯୁକ୍ତ ଶକ୍ତି ପ୍ରସାଦ ମିଶ୍ର ସମ୍ମାନନୀୟ ଅତିଥି, ଶ୍ରୀଯୁକ୍ତ ଉଦୟନାଥ ମିଶ୍ର ମୁଖ୍ୟ ବକ୍ତା ଭାବରେ ଯୋଗଦାନ କରି ଏହି ଉତ୍ସବଟିକୁ ସାଫଲ୍ୟ ମଣ୍ଡିତ କରିଥିଲେ । ବର୍ତ୍ତମାନର ବୈଷୟିକ ନିର୍ଦ୍ଦେଶକ ଶ୍ରୀଯୁକ୍ତ ବିଶ୍ୱନାଥ ଶତପଥୀ ମଧ୍ୟ ବକ୍ତା ଭାବରେ ଏହି ଉତ୍ସବରେ ଯୋଗ ଦେଇଥିଲେ ।

ଉକ୍ତ ଶିଳ୍ପାନୁଷ୍ଠାନର ବୈଷୟିକ, ସାଂସ୍କୃତିକ, ଫୁଟବଲ୍ କ୍ରୀଡ଼ାବିତ୍ ଓ ଶ୍ରମିକ ନେତାମାନଙ୍କ ସହିତ ସୁସମ୍ପର୍କ ସ୍ଥାପନ ଫଳରେ ଏହି ଶିଳ୍ପାନୁଷ୍ଠାନଟି ଗୋଟିଏ ବୃହତ୍ ଶିଳ୍ପାନୁଷ୍ଠାନରେ ପରିଣତ କରାଯାଇ ପାରିଛି ବୋଲି ଅବସରପ୍ରାପ୍ତ ନିର୍ଦ୍ଦେଶକ ଶ୍ରୀଯୁକ୍ତ ଶକ୍ତି ପ୍ରସାଦ ମିଶ୍ର ଓ ଶ୍ରୀଯୁକ୍ତ ଉଦୟନାଥ ମିଶ୍ର କର୍ମଚାରୀମାନଙ୍କ ନିଷ୍ଠାପର ସହଯୋଗ ଓ ସହାନୁଭୂତି ନିମନ୍ତେ ଭୂୟସୀ ପ୍ରଶଂସା କରିଥିଲେ ।

ଏହି ମୁଦ୍ରଣାଳୟର ଆଶାନୁରୂପ ଅଗ୍ରଗତି ପାଇଁ ସ୍ୱଳ୍ପ ସମୟ ମଧ୍ୟରେ ଅତ୍ୟାଧୁନିକ ଅଫ୍‌ସେଟ୍ ଛାପା କଳକୁ ପ୍ରଚଳନ କରି ଅଧିକ ମୁଦ୍ରଣ ବିଷୟରେ ଶ୍ରୀଯୁକ୍ତ ଶକ୍ତି ପ୍ରସାଦ ମିଶ୍ର କହିଥିଲେ । ଏହି ମୁଦ୍ରଣାଳୟର କର୍ମଚାରୀମାନେ ନିଜ ଭିତରେ ସମନ୍ୱୟ ରକ୍ଷା କରି ନିର୍ଦ୍ଦିଷ୍ଟ ସମୟ ସୀମା ଭିତରେ ସରକାରଙ୍କର ଜରୁରୀ କାର୍ଯ୍ୟ ସମ୍ପାଦନ କରି ସର୍ବଭାରତୀୟ ସ୍ତରରେ ଏ ସଂସ୍ଥାର ସମ୍ମାନକୁ ବଜାୟ ରଖି ପାରିଛନ୍ତି ବୋଲି ସେ ପ୍ରକାଶ କରିଥିଲେ ।

ଏହାପରେ ସେ କହିଲେ, କର୍ମଚାରୀମାନଙ୍କ ମଧ୍ୟରେ ସାମାଜିକ ସଚେତନତା ଆଣିବା ପାଇଁ ଏ ସଂସ୍ଥା ଭିତରେ ସାଂସ୍କୃତିକ କାର୍ଯ୍ୟକ୍ରମ ଓ ଫୁଟବଲ୍ ଖେଳକୁ ସ୍ୱତନ୍ତ୍ର ଗୁରୁତ୍ୱ ଦିଆଯାଇ କଳାକାର ଓ ଖେଳାଳୀମାନଙ୍କୁ ଉତ୍ସାହିତ କରାଯାଉଥିଲା ।

ସର୍ବଭାରତୀୟ ସ୍ତରରେ ଫୁଟବଲ ଖେଳରେ ସୁନାମ ଅର୍ଜନ ନିମିତ୍ତ ଦକ୍ଷ ଓ କୁଶଳୀ ଖେଳାଳୀମାନଙ୍କୁ ଏହି ସଂସ୍ଥାରେ ନିଯୁକ୍ତି ଦିଆଯାଇ ସଂସ୍ଥାର ସମ୍ମାନକୁ ବଜାୟ ରଖାଯାଇଥିଲା । ପ୍ରତି ବର୍ଷ ଖେଳାଳୀମାନେ ଜିତାପଟ ନେଇ ପୁରସ୍କାର ଆଣୁଥିଲେ । ଶ୍ରୀଯୁକ୍ତ ଶକ୍ତି ପ୍ରସାଦ ମିଶ୍ର ଏହା କହିବା ବେଳେ ଅତ୍ୟନ୍ତ ଭାବ ବିହ୍ୱଳ ହୋଇ ପଡ଼ିଥିଲେ । ତାଙ୍କର କର୍ମମୟ ଜୀବନ ଆରମ୍ଭ ଏହି ଶିଳ୍ପାନୁଷ୍ଠାନର କର୍ମଚାରୀ ଭାଇମାନଙ୍କ ପାଖରେ । ପଦୋନ୍ନତି ପାଇ ମତ୍ସ୍ୟ ବିଭାଗ, ଶିକ୍ଷା ବିଭାଗ ଓ ସମବାୟ ବିଭାଗରେ ଦାୟିତ୍ୱ ତୁଲାଇ କର୍ମ କ୍ଷେତ୍ରରୁ ଅବସର ନେଇଥିଲେ ମଧ୍ୟ ବର୍ତ୍ତମାନ ସେ ଗୋଟିଏ ମୁଦ୍ରଣାଳୟ ଦାୟିତ୍ୱରେ ରହି କାର୍ଯ୍ୟ କରୁଛନ୍ତି । କିନ୍ତୁ ଆଜି ବଡ଼ ସୌଭାଗ୍ୟର ଦିନ ସେ ତାଙ୍କର ପୂର୍ବ ପରିଚିତ କର୍ମଚାରୀ ଓ ସହକର୍ମୀ ଭାଇମାନଙ୍କର ଏ ମହତ୍ ଉତ୍ସବରେ ଅଂଶ

୩,୨୨୧·୩୨ ମେଟ୍ରିକ୍ ଟନ୍ ଚାଉଳ ଓ ୧,୫୩୬·୮୦ ମେଟ୍ରିକ୍ ଟନ୍ ଗହମ ଶ୍ରମିକମାନଙ୍କୁ ଯୋଗାଇ ଦିଆଯାଇଛି ।

ସୃଷ୍ଟି ହୋଇଥିବା ୧୧୬·୭୮ ଲକ୍ଷ ଶ୍ରମ ଦିବସ ମଧ୍ୟରେ ହରିଜନ ଶ୍ରମିକଙ୍କ ନିମନ୍ତେ ସୃଷ୍ଟି ୩୫·୯୨ ଲକ୍ଷ ଶ୍ରମ ଦିବସ ଓ ଆଦିବାସୀ ଶ୍ରମିକଙ୍କ ନିମନ୍ତେ ସୃଷ୍ଟି ୫୬·୮୧ ଶ୍ରମ ଦିବସ ଅନ୍ତର୍ଭୁକ୍ତ । ଏହି ଶ୍ରମ ଦିବସ ଦ୍ୱାରା ୨୯·୨୭ ଲକ୍ଷ ମହିଳା ଶ୍ରମିକ ଓ ୨୨·୧୧ ଲକ୍ଷ ଭୂମିହୀନ ଶ୍ରମିକ ଉପକୃତ ହୋଇପାରିଛନ୍ତି ବୋଲି ପଞ୍ଚାୟତିରାଜ ବିଭାଗ ସୂତ୍ରରୁ ଜଣାଯାଇଛି ।

## ରାଜ୍ୟରେ ପରିବାର କଲ୍ୟାଣ କାର୍ଯ୍ୟକ୍ରମ

ଜନ ବିସ୍ଫୋରଣ ରୋକିବା ଏବଂ ସାମାଜିକ ଜୀବନକୁ ସୁଶୃଙ୍ଖଳିତ କରିବା ଉଦ୍ଦେଶ୍ୟରେ ସରକାରଙ୍କ ତରଫରୁ ବିଭିନ୍ନ ପରିକଳ୍ପନା ଜରିଆରେ ଜନହିତକର କାର୍ଯ୍ୟକ୍ରମମାନ କାର୍ଯ୍ୟକାରୀ କରାଯାଇଛି । ପରିବାର କଲ୍ୟାଣ କାର୍ଯ୍ୟକ୍ରମ ତନ୍ମଧ୍ୟରେ ଅନ୍ୟତମ । ଏହି କାର୍ଯ୍ୟକ୍ରମରେ ଚଳିତ ଆର୍ଥିକ ବର୍ଷର ପ୍ରଥମ ଚାରିମାସରେ, ଅର୍ଥାତ୍ ଜୁଲାଇ ମାସ ସୁଦ୍ଧା ୧୫,୪୨୩ ଜଣ ବ୍ୟକ୍ତିଙ୍କୁ ଜନ୍ମ ନିୟନ୍ତ୍ରଣ ଅସ୍ତ୍ରୋପଚାର କରାଯାଇଛି । କେବଳ ଗତ ଜୁଲାଇ ମାସରେ ଏହି କାର୍ଯ୍ୟକ୍ରମରେ ଅସ୍ତ୍ରୋପଚାର କରିଥିବା ୬,୨୮୯ ଜଣ ବ୍ୟକ୍ତି ତନ୍ମଧ୍ୟରେ ଅନ୍ତର୍ଭୁକ୍ତ ।

ସେହିପରି ଉକ୍ତ ସମୟ ମଧ୍ୟରେ ସନ୍ତାନ ଜନ୍ମ ବ୍ୟବଧାନର ସମୟ ସୀମା ବୃଦ୍ଧି ନିମନ୍ତେ ୨୫,୬୦୫ ଜଣ ମହିଳା ଆଇ: ୟୁ: ଡି:, ୭୨,୮୧୭ ଜଣ ମହିଳା ସି: ସି: ଏବଂ ୧୭,୦୯୧ ଜଣ ମହିଳା ଗର୍ଭ ନିରୋଧ ବଟିକା ସେବନ କରିଛନ୍ତି । କେବଳ ଗତ ଜୁଲାଇ ମାସରେ ଏହି କାର୍ଯ୍ୟକ୍ରମରେ ୧୦,୪୮୫ ଜଣ ମହିଳା ଆଇ: ୟୁ: ଡି:, ୨୩,୩୨୫ ଜଣ ମହିଳା ସି: ସି: ଏବଂ ୩,୨୩୩ ଜଣ ମହିଳା ଗର୍ଭ ନିରୋଧକ ବଟିକା ସେବନ କରିଛନ୍ତି ବୋଲି ବିଂଶସୂତ୍ରୀ କାର୍ଯ୍ୟକ୍ରମ ମାସିକ ଅଗ୍ରଗତି ବିବରଣୀରୁ ଜଣାଯାଇଛି ।

ଏହା ବ୍ୟତୀତ ରାଜ୍ୟରେ ୨୮୩ଟି ସମନ୍ୱିତ ଶିଶୁ ବିକାଶ ଯୋଜନା କାର୍ଯ୍ୟକାରୀ ହେବା ସଙ୍ଗେ ସଙ୍ଗେ ୧୯,୫୦୮ଟି ଅଙ୍ଗନବାଡ଼ି କେନ୍ଦ୍ର କାର୍ଯ୍ୟ କରୁଛି ବୋଲି ଯୋଜନା ଓ ସମନ୍ୱୟ ବିଭାଗ ସୂତ୍ରରୁ ଜଣାଯାଇଛି ।

## ରାଜ୍ୟ ସ୍ତରୀୟ ଉପଦେଷ୍ଟା କମିଟି ବୈଠକ

ସମ୍ପ୍ରତି ଗତ ଅଗଷ୍ଟ ୨୦ ତାରିଖ ଦିନ ସଚିବାଳୟଠାରେ ମୁଖ୍ୟ ଶାସନ ସଚିବ ଶ୍ରୀ ରବି ନାରାୟଣ ଦାସଙ୍କ ଅଧ୍ୟକ୍ଷତାରେ ନବମ ରାଜ୍ୟସ୍ତରୀୟ ଉପଦେଷ୍ଟା କମିଟି ବୈଠକ ଅନୁଷ୍ଠିତ ହୋଇଥିଲା । ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମ ଓ ଯୋଜନାକୁ କାର୍ଯ୍ୟକାରୀ କରାଇବା ଦିଗରେ ସ୍ୱେଚ୍ଛାସେବୀ ଅନୁଷ୍ଠାନ ବେସରକାରୀ ସଂସ୍ଥାଗୁଡ଼ିକର ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ । ଏହି ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକର ସୁପରିଚାଳନା, କାର୍ଯ୍ୟବିଧି ଏବଂ ଅଗ୍ରଗତି ପ୍ରତି ଧ୍ୟାନ ଦିଆଯାଇ ବ୍ଲକ୍ ଓ ଜିଲ୍ଲା ସ୍ତରରେ ଉପଦେଷ୍ଟା କମିଟିମାନ ଗଠନ କରାଯାଇଛି । ବ୍ଲକ୍ ଓ ଜିଲ୍ଲା ସ୍ତରରେ କାର୍ଯ୍ୟ ସମ୍ପାଦନ କରୁଥିବା ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକ ସହିତ ସମନ୍ୱୟ ରକ୍ଷା ଲାଗି ରାଜ୍ୟସ୍ତରୀୟ ଉପଦେଷ୍ଟା କମିଟି ଗଠିତ ହୋଇଛି ।

ଆଲୋଚନାରେ ଅଂଶ ଗ୍ରହଣ କରି ମୁଖ୍ୟ ଶାସନ ସଚିବ ଶ୍ରୀ ଦାସ ଜିଲ୍ଲାପାଳମାନଙ୍କଠାରୁ ସମ୍ପୃକ୍ତ ଜିଲ୍ଲାର ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକର କାର୍ଯ୍ୟ କଳାପ, ସମସ୍ୟା ଇତ୍ୟାଦି ସମ୍ପର୍କରେ ପଚାରି ବୁଝିଥିଲେ । ଯୋଜନା ଓ ସମନ୍ୱୟ ବିଭାଗ ତରଫରୁ ସମ୍ପୃକ୍ତ ଜିଲ୍ଲାପାଳମାନଙ୍କୁ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକର କାର୍ଯ୍ୟ କଳାପ, କାର୍ଯ୍ୟ ପରିସର ଓ ସରକାରୀ ଅନୁଦାନ ପାଇଁ ଆବଶ୍ୟକ ଚୁକ୍ତିନାମା ପଠାଇବା ଲାଗି ପୂର୍ବରୁ ନିର୍ଦ୍ଦେଶ ଦିଆଯାଇଥିଲା । ଏଥି ସଙ୍ଗେ ସଙ୍ଗେ ସେମାନଙ୍କୁ ମଧ୍ୟ ୧୯୯୩-୯୪ ବର୍ଷ ପାଇଁ ସେମାନଙ୍କ ଯୋଜନା କାର୍ଯ୍ୟକ୍ରମ ଏବଂ ଅଷ୍ଟମ ପଞ୍ଚବାର୍ଷିକ ଯୋଜନା ପାଇଁ ସମ୍ଭାବ୍ୟ କାର୍ଯ୍ୟକ୍ରମ ପ୍ରସ୍ତୁତ କରି ପଠାଇବା ପାଇଁ ପରାମର୍ଶ ଦିଆଯାଇଥିଲା । ଜିଲ୍ଲାପାଳମାନଙ୍କଠାରୁ ସମସ୍ତ ବିବରଣୀ ମିଳିବା ପରେ ସେଗୁଡ଼ିକ କେନ୍ଦ୍ର ସରକାରଙ୍କ ଅନୁଦାନ ପାଇଁ ପଠାଇ ଦିଆଯିବ ବୋଲି ମୁଖ୍ୟ ଶାସନ ସଚିବ ସୂଚନା ଦେଇଥିଲେ ।

ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକର ସୁପରିଚାଳନା, ସେମାନଙ୍କୁ ଦିଆଯାଉଥିବା ସରକାରୀ ଅନୁଦାନର ଯଥାଯଥ ବିନିଯୋଗ, ଗଣଶିକ୍ଷା, ମହିଳା ସଙ୍ଗଠନ, ପରିବାର କଲ୍ୟାଣ, କୃଷି, ପରିବେଶ ସୁରକ୍ଷା, ସମବାୟ, ପାନୀୟ ଜଳ, ନୂତନ ବନୀକରଣ, ଜଙ୍ଗଲ କ୍ଷୟର ସୁରକ୍ଷା, ନିଶା ନିବାରଣ, ଆଇନ ଶୃଙ୍ଖଳା ରକ୍ଷା ଭଳି କାର୍ଯ୍ୟକ୍ରମରେ ସ୍ୱେଚ୍ଛାସେବୀମାନଙ୍କର ସକ୍ରିୟ ଅଂଶ ଗ୍ରହଣ ଓ ଅବଦାନ ସର୍ବଦା ପ୍ରଶଂସନୀୟ ହୋଇଆସିଛି । ସେମାନେ ଏସବୁ କାର୍ଯ୍ୟକ୍ରମକୁ ଅଧିକ ନିଷ୍ଠାର ସହ କାର୍ଯ୍ୟକାରୀ କରିବା ସଙ୍ଗେ ସଙ୍ଗେ ସମ୍ପୃକ୍ତ ବିଭାଗ ସହ ସମନ୍ୱୟ ରକ୍ଷା କରିବେ ବୋଲି ସର୍ବସମ୍ମତ ମତ ପ୍ରକାଶ ପାଇଥିଲା । ଜିଲ୍ଲାପାଳମାନେ ଜିଲ୍ଲା ଓ ବ୍ଲକ୍ ସ୍ତରରେ କାର୍ଯ୍ୟକାରୀ କରୁଥିବା ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକ ସହିତ ସମନ୍ୱୟ ରକ୍ଷା କରି ସେମାନଙ୍କର କାର୍ଯ୍ୟ କଳାପ ସଂକ୍ରାନ୍ତ ରିପୋର୍ଟ ସରକାରଙ୍କୁ ପଠାଇବା ସହିତ ସେମାନଙ୍କୁ ଯଥାଯଥ ଦିଗ୍‌ଦର୍ଶନ ଦେବେ ବୋଲି ସ୍ୱୀକୃତି ପ୍ରଦାନ କରିଥିଲେ ।

ଏହି ବୈଠକରେ ରାଜ୍ୟ ଉନ୍ନୟନ କମିଶନର, କୃଷି ଉତ୍ପାଦନ କମିଶନରଙ୍କ ସମେତ ବିଭିନ୍ନ ବିଭାଗର ଶାସନ ସଚିବ ଉଚ୍ଚ ପଦାଧିକାରୀ, ଓଡ଼ିଶା ରାଜ୍ୟ ଶିଶୁ କଲ୍ୟାଣ ପରିଷଦର ମୁଖ୍ୟ ଶାସନ ସଚିବ, ରେଡ଼କ୍ରସର ସଚିବ, ମନୋଜ ମଞ୍ଜରୀ ଶିଶୁ ଭବନର ସମ୍ପାଦକ ଏବଂ ଜିଲ୍ଲାପାଳମାନେ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

